# ଆଧୁନିକ

# ଜ୍ୟୋତିଷ ଶିକ୍ଷା




ଶ୍ରୀ ଜନାର୍ଦ୍ଦନ ଷଡ଼ଙ୍ଗୀ

ଆଧୁନିକ

# ଜ୍ୟୋତିଷ ଶିକ୍ଷା

ଲେଖକ—

ଶ୍ରୀ ଜନାର୍ଦ୍ଦନ ଷଡ଼ଙ୍ଗୀ

ପ୍ରଥମ ସଂସ୍କରଣ

୧୯୪୭

ମୂଲ୍ୟ—ଏକଟଙ୍କା

ସାରସ୍ୱତ ପ୍ରେସ ଅନୁକୂଲ୍ୟରେ
ପ୍ରକାଶିତ

ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ॥

# ଅଭିମତ

ରେଭେନସା କଲେଜର କେମିଷ୍ଟ୍ରି ଅଧ୍ୟାପକ ଶ୍ରୀଯୁକ୍ତ ଲୋକନାଥ ମିଶ୍ର, M. Sc.ଙ୍କର ମନ୍ତବ୍ୟ ।

ଶ୍ରୀମାନ୍ ଜନାର୍ଦ୍ଦନ ଷଡ଼ଙ୍ଗୀଙ୍କର ଆଧୁନିକ ଜ୍ୟୋତିଷ ଶିକ୍ଷା ପୁସ୍ତିକାର ପାଣ୍ଡୁଲିପି ପାଠକରି ପ୍ରୀତ ହେଲି । ଜ୍ୟୋତିଷ ଶାସ୍ତ୍ର ବଡ଼ କଠିନ । ଫଳିତ ଜ୍ୟୋତିଷ ଗଣିତ ଉପରେ ନିର୍ଭର କରେ । ଏ ସମ୍ବନ୍ଧୀୟ ଗ୍ରନ୍ଥ ପ୍ରାୟ କଠିନ ଭାଷାରେ ଲେଖା ଥାଏ । କିନ୍ତୁ ଆଧୁନିକ ଜ୍ୟୋତିଷ ଶିକ୍ଷାକୁ ଲେଖକ ବହୁ ଆୟାସ ସ୍ୱୀକାର କରି ଯଥାସାଧ୍ୟ ସରଳ ଭାଷାରେ ଲେଖିଛନ୍ତି । ଏହାକୁ ଯେ କୌଣସି ଆଧୁନିକ ଶିକ୍ଷିତ ଲୋକ ଟିକିଏ ଚେଷ୍ଟା କଲେ ଶିକ୍ଷା କରି ପାରିବେ । ଶୁଦ୍ଧିଏ ନିର୍ଭୁଲ କୋଷ୍ଠୀ ଫଳାଫଳ ବିଚାର କରିବାକୁ ନିତାନ୍ତ ଆବଶ୍ୟକ ଏବଂ ଏ ପୁସ୍ତିକାରେ ତାହାର ପ୍ରକୃତ ଚେଷ୍ଟା କରି ଯାଇ ଅଛି । ଠିକ୍ ରୂପେ ଫଳ ବିଚାର କରିବାକୁ ସ୍ୱବ କୁଣ୍ଡଳୀ ପ୍ରସ୍ତୁତ କରି-ବାର ପ୍ରଣାଳୀ ମଧ୍ୟ ଦିଆ ହୋଇ ଅଛି । ଆଧୁନିକଶିକ୍ଷିତ ବ୍ୟକ୍ତିଙ୍କର ଏ ପୁସ୍ତକ ପାଠରେ ଆଦର ଦେଖିଲେ ଲେଖକ ଏ ବିଷୟରେ ଅନ୍ୟ ପୁସ୍ତକ ପ୍ରକାଶ କରିବାକୁ ଉତ୍ସାହୀ ହେବେ ।

Ravenshaw College  
Dt, 16-11-46

Sd. L. Misra  
Prof. of Chemistry

ସୁଣୀହାଟ ସ୍କୁଲର ହେଡମାଷ୍ଟର ଶ୍ରୀଯୁକ୍ତ ବାଞ୍ଛାନିଧି ଶତପଥୀ
ବି. ଏ., ଡି. ଇଡଙ୍କର ମନ୍ତବ୍ୟ

ଆଧୁନିକ ଜ୍ୟୋତିଷ ଶିକ୍ଷା ପୁସ୍ତିକାଟିର ପାଣ୍ଡୁଲିପି ପାଠକରି ଅତିଶୟ ପ୍ରୀତ ହେଲି । ବାସ୍ତବିକ୍ ତାହା ଆଧୁନିକ ଶିକ୍ଷାପ୍ରାପ୍ତ ବ୍ୟକ୍ତି ପକ୍ଷରେ ସହଜବୋଧ ହୋଇଅଛି । ଜ୍ୟୋତିଷ ବିଦ୍ୟାର ଆଲୋଚନା ଆମ ପ୍ରଦେଶର ଆଧୁନିକ ଶିକ୍ଷାରେ ଶିକ୍ଷିତ ସମାଜରେ ବିଶେଷ ଆଦରଣୀୟ ନୁହେଁ ବୋଲି କୁହା ଯାଇ ନପାରେ । ଏତିକି ସତ୍ୟ ଯେ ଶିକ୍ଷିତ ସମାଜ ତାହାର ଆଲୋଚନା ଅଳ୍ପଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ବ୍ୟକ୍ତି ଉପରେ ଛାଡି ଦେଇ ସେ ବିଦ୍ୟା ଉପରେ ଆସ୍ଥା ହରାଇବାର କାରଣ ଦେଖୁଛି । ଅନ୍ୟାନ୍ୟ ପ୍ରଦେଶର ଖୁବ୍ ଉଚ୍ଚ ଶିକ୍ଷିତ ବ୍ୟକ୍ତି ତାର ଆଲୋଚନା କରି ସେ ଦିଗକୁ ବାଟ ଦେଖାଉଅଛନ୍ତି । ଲେଖକ ସେ ଦିଗକୁ ଆମର ଶିକ୍ଷିତ ସମାଜର ଶ୍ରଦ୍ଧା ଜନ୍ମାଇବା ପାଇଁ ଚେଷ୍ଟିତ । ସେ ଏହି ପୁସ୍ତିକାଟିରେ ନିର୍ଭୁଲ ଭାବରେ କୋଷ୍ଠୀ ପ୍ରସ୍ତୁତ କରିବାର ପ୍ରଣାଳୀ ଏବଂ ନିର୍ଭୁଲ ଭାବରେ ବିଚାର ନିମିତ୍ତ ଯେଉଁସବୁ ଗାଣିତିକ ଗଣନା ଦରକାର ତାହା ଦର୍ଶାଇ ଅଛନ୍ତି । ମୋର ବିଶ୍ୱାସ ପୁସ୍ତିକାଟି ସର୍ବସାଧାରଣରେ ଆଦର ପାଇ ଲେଖକଙ୍କର ଉଦ୍ଦେଶ୍ୟ ସାଧନରେ ହତାଶା ଆଣିବ ନାହିଁ । ଲେଖକ ଏ ଦିଗରେ ଯେଉଁ ଶିକ୍ଷିତ ବ୍ୟକ୍ତି-ମାନଙ୍କର ଶ୍ରଦ୍ଧା ଜନ୍ମିବ ସେମାନଙ୍କ ପାଇଁ ଆଧୁନିକ ପ୍ରଣାଳୀରେ ଅନ୍ୟ ପୁସ୍ତକ ପ୍ରକାଶ କରିବେ, ଏହାହିଁ ମୋର ଶୁଭକାମନା । ଆଧୁନିକ ଧାରଣରେ ଲେଖା ଅନ୍ୟଗ୍ରନ୍ଥ ପାଠକରି ଆୟାସ ଲବ୍ଧ ଜ୍ଞାନ ସହଜ-ବୋଧ୍ୟ ପ୍ରଣାଳୀରେ ପ୍ରକାଶ କଲେ ଏ ବିଦ୍ୟାର ଆଦର ବଢିବ ଏବଂ ଲେଖକଙ୍କର ଉଦ୍ଦେଶ୍ୟ ସାଧିତ ହେବ ।

କଟକ

ଶ୍ରୀ ବାଞ୍ଛାନିଧି ଶତପଥୀ

ମୋର ଜ୍ୟେଷ୍ଠ ଶ୍ୟାଳକ ଶ୍ରୀ ଜନାର୍ଦ୍ଦନ ଷଡ଼ଙ୍ଗୀ ସଂପୂର୍ଣ୍ଣ ନାସ୍ତିକ ଥିଲେ । ଆଧୁନିକ ଶିକ୍ଷିତ ଅନ୍ୟାନ୍ୟ ଅନେକ ଯୁବକଙ୍କ ପରି ସେ ହିନ୍ଦୁମାନଙ୍କର ପୁରାତନ ଶାସ୍ତ୍ରଗୁଡ଼ିକୁ ଘୃଣାକରିବା ଆଧୁନିକତାର ଚିହ୍ନ ବୋଲି ମନେ କରୁଥିଲେ । ପ୍ରାୟ ୨୫ ବର୍ଷ ତଳେ ସାଙ୍ଘାତିକ Vertigo ରୋଗରେ ଆକ୍ରାନ୍ତ ହୋଇ ଛଅମାସକାଳ ସଂପୂର୍ଣ୍ଣ ଶଯ୍ୟାଶାୟୀ ହୋଇଥିଲେ । ଏହି ସମୟ ମଧ୍ୟରେ ତାଙ୍କର ପ୍ରଗାଢ଼ ଈଶ୍ୱରାନୁରାଗ ଜାତ ହୋଇଥିଲା ଏବଂ ସେ ପୁରାତନ ହିନ୍ଦୁ ଶାସ୍ତ୍ରମାନ ଅଧ୍ୟୟନ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । କଠିନ ରୋଗାକ୍ରାନ୍ତ ହୋଇଥିଲେ ମଧ୍ୟ ବୃଥାରେ ସମୟାତିପାତ କରିବା ତାଙ୍କ ପକ୍ଷରେ ଦୁଃସହ ହୋଇଥିଲା ଏବଂ ରୋଗର କିଛି ଉପଶମ ହେବାର ସଙ୍ଗେ ସଙ୍ଗେ ସେ ଜ୍ୟୋତିଷଶାସ୍ତ୍ର ଅଧ୍ୟୟନରେ ବ୍ରତୀ ହୋଇଥିଲେ । ପ୍ରଗାଢ଼ ଅଧ୍ୟବସାୟ ସହକାରେ ଇଂରାଜି ଲିଖିତ ଅନେକ ପୁସ୍ତକ ଅଧ୍ୟୟନ କରିବା ଫଳରେ ସେ ଅନୁଭବ କରିଥିଲେ ଯେ ଜ୍ୟୋତିଷ ଶାସ୍ତ୍ର କୁସଂସ୍କାର ନୁହେଁ, ଏହା ବିଜ୍ଞାନର ଗୋଟିଏ ଶ୍ରେଷ୍ଠ ଅଙ୍ଗ ଅଟେ । ଆଧୁନିକ ଶିକ୍ଷିତ ଲୋକେ ଏ ଶାସ୍ତ୍ରର ଆଲୋଚନା କଲେ ଏ ବିଦ୍ୟାର ଉତ୍ତରୋତ୍ତର ଉନ୍ନତି ସାଧିତ ହୋଇ ପାରିବ ବୋଲି ତାଙ୍କର ବିଶ୍ୱାସ ଜନ୍ମିଥିଲା । ତେଣୁ ସେ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନଙ୍କର ଏ ଶାସ୍ତ୍ରରେ ପ୍ରବେଶ କରିବାର ସୁବିଧା ପାଇଁ ଓ ସୂକ୍ଷ୍ମ ଭାବରେ କୋଷ୍ଠୀ ପ୍ରସ୍ତୁତ କରିବାପାଇଁ 'ଆଧୁନିକ ଜ୍ୟୋତିଷ ଶିକ୍ଷା' ସଙ୍କଳନ କରି ମୋ ଉପରେ ତାହାର ପ୍ରକାଶର ସମସ୍ତ ଭାର ଦେଇଥିଲେ ।

ଏ ପୁସ୍ତକ ମୁଦ୍ରଣର ବ୍ୟୟଭାର ବହନ କରିବା ମୋ ପକ୍ଷରେ କଠିନ ହୋଇଥିଲା ଏବଂ ଏ ବିଷୟରେ ମୁଁ ହତାଶ ଓ ଚିନ୍ତିତ ହୋଇଥିଲି । ମାତ୍ର କୋରାପୁଟବାସୀ କଣ୍ଟ୍ରାକ୍ଟର ଶ୍ରୀଯୁକ୍ତ ବଂଶୀଧର

ଯେହେତୁ ଏ ପୁସ୍ତକ ମୁଦ୍ରଣର ସମସ୍ତ ବ୍ୟୟଭାର ଉଦାର ଭାବରେ ବହନ କରିବାରୁ ଏ ପୁସ୍ତକ ମୁଦ୍ରିତ ହୋଇ ପାରିଲା । ସେଥିଲାଗି ମୁଁ ତାଙ୍କଠାରେ ଗଭୀର କୃତଜ୍ଞତା ଜଣାଉଅଛି । ଇତି ।

କଟକ
ତା ୧।୧।୪୭ } ଶ୍ରୀ ମଧୁସୂଦନ ଦାଶ ବି. ଏ.

# ଭୂମିକା

ଜ୍ୟୋତିଷ ଶାସ୍ତ୍ର ବହୁ ପୂର୍ବକାଳରୁ ଭାରତବର୍ଷରେ ପ୍ରଚଳିତ ହୋଇଅଛି । ଏ ଶାସ୍ତ୍ର ବେଦାଙ୍ଗ ଶାସ୍ତ୍ରର ଅନ୍ତର୍ଭୁକ୍ତ । ଏଥିରୁ ଏହାର ପ୍ରାଚୀନତ୍ୱ ସମ୍ବନ୍ଧରେ ଧାରଣା ଜନ୍ମିପାରେ । ବଡ଼ ଆଶ୍ଚର୍ଯ୍ୟର କଥା ଏହିକି ଯେ, କୌଣସି ଯନ୍ତ୍ର ଆବିଷ୍କୃତ ହେବାର ବହୁକାଳ ପୂର୍ବରୁ ଗ୍ରହମାନଙ୍କର ଗତିବିଧି ଗଣନାପାଇଁ ଯେଉଁ ନିୟମ ଲିପିବଦ୍ଧ ହୋଇଥିଲା ସେହି ନିୟମ ଅନୁସାରେ ଗଣନାକଲେ ଆଧୁନିକ ଯୁଗର ଗଣନାର ଫଳଠାରୁ କିଛି ପ୍ରଭେଦ ହୁଏ ନାହିଁ କହିଲେ ଚଳେ । ଏଥିରୁ ଅନୁମିତ ହୁଏ ଯେ ଆଜିକାଲି ଯନ୍ତ୍ରଦ୍ୱାରା ଯାହା ହୋଇପାରୁ ନାହିଁ ସେ କାଳରେ ତାହା ଯୋଗବଳ ବା ଦିବ୍ୟଦୃଷ୍ଟି ବଳରେ ହୋଇପାରୁଥିଲା । ସେମାନଙ୍କର ଗଣିତ ଜ୍ୟୋତିଷ ଯେ ଅକ୍ଷରେ ଅକ୍ଷରେ ସତ୍ୟ ତାହା ବୈଜ୍ଞାନିକ ମାନେହିଁ ସ୍ୱୀକାର କରିବେ । ଫଳିତ ଜ୍ୟୋତିଷକୁ ବୈଜ୍ଞାନିକମାନେ କୁସଂସ୍କାର ବୋଲି ଉଡ଼ାଇ ଦେଇଅଛନ୍ତି । ମାତ୍ର ବିଖ୍ୟାତ ଜ୍ୟୋତିର୍ବିଦ୍‌ମାନେ ଘଟଣାମାନ ଘଟିବାର ବହୁଦିନ ପୂର୍ବରୁ ଠିକ୍‌ରୂପେ ଭବିଷ୍ୟତ ବାଣୀ ଦେବାର ଦୃଷ୍ଟାନ୍ତ ବିରଳ ନୁହେଁ । ଏହାସତ୍ତ୍ୱେ ଏହାକୁ କୁସଂସ୍କାର ବୋଲି କହିବାର ଅର୍ଥ ସତ୍ୟକୁ ଅସ୍ୱୀକାର କରିବା ନୁହେଁ କି ? ଆମର ଏଠାରେ ବହୁତ ଅଶିକ୍ଷିତ ଓ ଅଳ୍ପ ଶିକ୍ଷିତ ଲୋକ ଜ୍ୟୋତିର୍ବିଦ ବୋଲାଉ ଅଛନ୍ତି ଏବଂ ସର୍ବସାଧାରଣ ତାଙ୍କ ଗଣନାରେ ସତ୍ୟତା ନ ଦେଖି ବୃଥାରେ ବରଂ ଜ୍ୟୋତିଷଶାସ୍ତ୍ର ଉପରେ ଦୋଷାରୋପ କରୁଅଛନ୍ତି । ଅବଶ୍ୟ ତଥାକଥିତ ଏହି ଜ୍ୟୋତିଷମାନଙ୍କର ଭ୍ରମପୂର୍ଣ୍ଣ ଗଣନା ଏଥିପାଇଁ ସଂପୂର୍ଣ୍ଣ ଦାୟୀ ।

ଭବିଷ୍ୟତ ଗଣନା ସହଜ ବ୍ୟାପାର ନୁହେଁ । ସେଥିପାଇଁ ବହୁ ପରିମାଣରେ ଶାସ୍ତ୍ରଜ୍ଞାନ, ତୀକ୍ଷ୍ଣ ବୁଦ୍ଧି ଓ ସ୍ମରଣଶକ୍ତି ଦରକାର ।

ସେଥିଲାଗି ଏହାକୁ କୁସଂସ୍କାର ବୋଲି ଉଡ଼ାଇ ନ ଦେଇ ଉଚ୍ଚ ଶିକ୍ଷିତ ଲୋକେ ଏ ବିଷୟ ଉତ୍ତମରୂପେ ଶିକ୍ଷାକରି ଏହାର ସତ୍ୟାସତ୍ୟ ବିଷୟରେ ଅନୁସନ୍ଧାନ କରିବା ଆବଶ୍ୟକ ।

କୋଷ୍ଠୀ ଉପରେ ଭବିଷ୍ୟତ ଗଣନା ନିର୍ଭର କରେ । ମାତ୍ର ଦୁଃଖର କଥା ଏହି ଯେ ସାଧାରଣ ନାହାକମାନଙ୍କର "ଲୋକାଲ୍" ଓ "ଷ୍ଟାଣ୍ଡାର୍ଡ଼" ସମୟ, ଲଗ୍ନ ନିରୂପଣ ପ୍ରଭୃତି କୋଷ୍ଠୀ ଗଣନାର ନିହାତି ଦରକାରୀ ବିଷୟରେ ଅଜ୍ଞାନ ଥିବାରୁ ବହୁସଂଖ୍ୟକ କୋଷ୍ଠୀ ଭୁଲ ଥିବାର ଜଣାଯାଏ । ଏପରି ଭୁଲ କୋଷ୍ଠୀରୁ ଗଣନା କଲେ ଯେ ଫଳ ଭୁଲ ଆସିବ ଏଥିରେ ସନ୍ଦେହ କଣ ?

ଅଧିକନ୍ତୁ ଭାବଚକ୍ର ଓ ନବାଂଶ ଚକ୍ର ପରି ଦରକାରୀ ଚକ୍ର ଖୁବ୍ କମ କୋଷ୍ଠୀରେ ଦେଖିବାକୁ ମିଳେ । ଭାବଚକ୍ର ଓ ନବାଂଶ ଚକ୍ର ଶ୍ରମସାପେକ୍ଷ ହେଲେ ମଧ୍ୟ ଏହାର ଗୁରୁତ୍ୱଦୃଷ୍ଟିରୁ ଏହାକୁ ଅବ୍ୟାହତ ଦେଇ ହେବ ନାହିଁ । ଏହା ବିଖ୍ୟାତ ଜ୍ୟୋତିର୍ବିଦ୍-ମାନଙ୍କର ମତ ।

ଏହି କ୍ଷୁଦ୍ର ପୁସ୍ତକଟିରେ ରାଶି, ଭାବ ଓ ନବାଂଶ ଚକ୍ର ସହିତ ଠିକ୍‌ରୂପେ କୋଷ୍ଠୀ ପ୍ରସ୍ତୁତ କରିବାର ପ୍ରଣାଳୀ ଦିଆଯାଇଅଛି । ଅଧିକନ୍ତୁ ଦଶା ନିରୂପଣ ଓ ଜ୍ୟୋତିଷ ଶାସ୍ତ୍ରରେ ପ୍ରବେଶ କରିବାର ସୁବିଧାପାଇଁ କେତେକ ଦରକାରୀ ବିଷୟ ଆଧୁନିକ ଧରଣରେ ଓ ସରଳଭାଷାରେ ଯୋଗ କରାଯାଇଅଛି ।

ଏ ପୁସ୍ତକ ପାଠ କରି ସର୍ବସାଧାରଣ ଠିକ୍‌ରୂପେ କୋଷ୍ଠୀ ତିଆରି କରି ପାରିଲେ ମୋର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

। ଇତି ।
ବିନୀତ
ଲେଖକ

# ସୂଚୀପତ୍ର

ଆଧୁନିକ

# ଜ୍ୟୋତିଷ ଶିକ୍ଷା

## ପ୍ରଥମ ପରିଚ୍ଛେଦ

ଗ୍ରହମାନଙ୍କର ନାମ—୧ ରବି, ୨ ଚନ୍ଦ୍ର, ୩ ମଙ୍ଗଳ, ୪ ବୁଧ, ୫ ବୃହସ୍ପତି (ଗୁରୁ), ୬ ଶୁକ୍ର, ୭ ଶନି, ୮ ରାହୁ, ୯ କେତୁ ।

ଏହି ଗ୍ରହମାନେ ପ୍ରାଣୀମାନଙ୍କର ସମସ୍ତ ବିଷୟରେ ବହୁ ପରିମାଣରେ ପ୍ରଭାବ ବିସ୍ତାର କରନ୍ତି । ତେଣୁ ଏମାନଙ୍କର ଗତିବିଧି ଏବଂ ତାହାର ଫଳାଫଳ ନେଇ ଜ୍ୟୋତିଷ ଶାସ୍ତ୍ର ସୃଷ୍ଟି ହୋଇଅଛି । ଏତଦ୍‌ଭିନ୍ନ ୟୁରେନସ୍ (Uranus), ନେପଚୁନ୍ (Neptune) ଏବଂ ପ୍ଲୁଟୋ (Pluto) ନାମକ ତିନୋଟି ଗ୍ରହ ଅଛନ୍ତି । ମାତ୍ର ହିନ୍ଦୁ ଶାସ୍ତ୍ରରେ ସେମାନଙ୍କ ବିଷୟରେ କିଛି ଉଲ୍ଲେଖ ନାହିଁ ।

ସୂର୍ଯ୍ୟ ସ୍ଥିର । ପ୍ରତ୍ୟେକ ଗ୍ରହ ସୂର୍ଯ୍ୟଙ୍କ ଚତୁଃପାର୍ଶ୍ୱରେ ନିଜ ନିଜ କକ୍ଷରେ ଭ୍ରମଣ କରନ୍ତି । ଆମ୍ଭମାନଙ୍କର ପୃଥିବୀ ମଧ୍ୟ ସୂର୍ଯ୍ୟଙ୍କର ଚତୁଃପାର୍ଶ୍ୱରେ ନିଜ କକ୍ଷରେ ଭ୍ରମଣ କରେ । କିନ୍ତୁ ଆମ୍ଭେମାନେ ପୃଥିବୀରେ ଥାଇ ଗ୍ରହମାନଙ୍କର ଗତି ଲକ୍ଷ୍ୟ କରୁଥିବାରୁ ଆମ୍ଭମାନଙ୍କୁ ପୃଥିବୀ ସ୍ଥିର ଏବଂ ସୂର୍ଯ୍ୟ ଓ ଅନ୍ୟାନ୍ୟ ଗ୍ରହମାନେ ପୃଥିବୀର ମେରୁଦଣ୍ଡର ଚତୁଃପାର୍ଶ୍ୱରେ ଭ୍ରମଣ କଲା ପରି ଜଣାଯାଏ । ତେଣୁ ଆମ୍ଭେମାନେ ପୃଥିବୀକୁ ସୂର୍ଯ୍ୟଙ୍କ ସ୍ଥାନରେ ସ୍ଥିର ଓ ସୂର୍ଯ୍ୟଙ୍କୁ ପୃଥିବୀର କକ୍ଷରେ ଏବଂ ଅନ୍ୟାନ୍ୟ ଗ୍ରହମାନେ ସେମାନଙ୍କର ନିଜ ନିଜ କକ୍ଷରେ ଭ୍ରମଣ କରୁଛନ୍ତି ବୋଲି ମନେକଲେ ବୁଝିବାକୁ ସହଜ ହେବ କିନ୍ତୁ ଗଣନାରେ କୌଣସି ଭୁଲ୍ ହେବ ନାହିଁ । ଭୁଲ୍ ନ ହେବାର କାରଣ ଏହିକି ଯେ ଆମ୍ଭେମାନେ ପୃଥିବୀର ଅନୁପାତରେ ଗ୍ରହମାନଙ୍କର ସ୍ଥିତି ଗଣନା କରୁ ; ସୂର୍ଯ୍ୟଙ୍କର ଅନୁପାତରେ ନୁହେଁ ।

ରାଶିଚକ୍ର






( ଖ )

କୌଣସି ବସ୍ତୁକୁ କେନ୍ଦ୍ର କରି ତାହାର ଚତୁଃପାର୍ଶ୍ୱରେ ଥରେ ବୁଲି ଆସିଲେ ସେହି କେନ୍ଦ୍ର ବସ୍ତୁଟିରେ ୩୬୦ (ଡିଗ୍ରୀ) ଅଂଶ କୋଣ ହୁଏ । ସେହିପରି ଗ୍ରହମାନେ ପୃଥିବୀର ଚତୁଃପାର୍ଶ୍ୱରେ ଥରେ ବୁଲି ଆସିବାଦ୍ୱାରା ପୃଥିବୀର କେନ୍ଦ୍ରରେ ୩୬୦° କୋଣ ଉତ୍ପନ୍ନ କରନ୍ତି । ସୂର୍ଯ୍ୟ ପୃଥିବୀର ଚତୁଃପାର୍ଶ୍ୱରେ ଯେଉଁ ପଥରେ ଭ୍ରମଣ କଲି ପରି ଜଣାଯାଏ ତାହାକୁ ଭଚକ୍ର ବୋଲିଯାଏ । ଏହି ଭଚକ୍ରକୁ ୧୨ ସମାନ ଭାଗରେ ବିଭକ୍ତ କରିଯାଇ ପ୍ରତ୍ୟେକ ଭାଗକୁ ରାଶି ନାମ ଦିଆହୋଇଅଛି ଏବଂ ସମୁଦାୟ ଚକ୍ରକୁ ରାଶିଚକ୍ର ନାମ ଦିଆ ହୋଇଅଛି ।

ଅତଏବ ୧ ରାଶି $= \frac{୩୬୦^\circ}{୧୨} =$ ୩୦° ଡିଗ୍ରୀ ବା ଅଂଶ ।

**ରାଶିମାନଙ୍କର ନାମ**—୧ ମେଷ, ୨ ବୃଷ, ୩ ମିଥୁନ, ୪ କର୍କଟ, ୫ ସିଂହ, ୬ କନ୍ୟା, ୭ ତୁଳା, ୮ ବିଛା, ୯ ଧନୁ, ୧୦ ମକର, ୧୧ କୁମ୍ଭ, ୧୨ ମୀନ ।

(ଖ) ଚକ୍ରକୁ ହିନ୍ଦୁ ଶାସ୍ତ୍ରକାରମାନେ ବ୍ୟବହାର କରିଅଛନ୍ତି । କାରଣ ତାହାଦ୍ୱାରା ଚକ୍ର କାଟିବାପାଇଁ ଏବଂ ଗଣନା କରିବା ପାଇଁ ସୁବିଧା ହୁଏ ।

**ଆକାଶରେ ରାଶି ଚିହ୍ନିବାର ଉପାୟ**—ଆକାଶର ସମସ୍ତ ସ୍ଥଳରେ ତାରାମାନେ ପୁଞ୍ଜି ପୁଞ୍ଜି ହୋଇ ଦେଖାଯାନ୍ତି । ଗ୍ରହମାନଙ୍କର ଗତି ପଥରେ ୨୪ ଗୋଟି ତାରାପୁଞ୍ଜ ଓ ୩ ଗୋଟି ଗୋଟିକିଆ ତାରା ଦେଖାଯାଏ । ସେମାନେ ସର୍ବଦା ସ୍ଥିର ଥିବାରୁ ସେମାନଙ୍କ ଦ୍ୱାରା ଭିନ୍ନ ରାଶିର ସୀମା ନିରୂପିତ ହୁଏ । ଏହି ୨୪ ଗୋଟି ତାରାପୁଞ୍ଜ ଓ ୩ ଗୋଟି ତାରା ୨୭ ଗୋଟି ନକ୍ଷତ୍ର ନାମରେ ପରିଚିତ ।

**ନକ୍ଷତ୍ରମାନଙ୍କର ନାମ—**

| | | |
|---|---|---|
| (୧) ଅଶ୍ୱିନୀ | (୧୦) ମଘା | (୧୯) ମୂଳା |
| (୨) ଭରଣୀ | (୧୧) ପୂର୍ବାଫାଲ୍‌ଗୁନୀ | (୨୦) ପୂର୍ବାଷାଢ଼ା |
| (୩) କୃତ୍ତିକା | (୧୨) ଉତ୍ତରଫାଲ୍‌ଗୁନୀ | (୨୧) ଉତ୍ତରଷାଢ଼ା |
| (୪) ରୋହିଣୀ | (୧୩) ହସ୍ତା | (୨୨) ଶ୍ରବଣା |
| (୫) ମୃଗଶିରା | (୧୪) ଚିତ୍ରା | (୨୩) ଧନିଷ୍ଠା |
| (୬) ଆର୍ଦ୍ରା | (୧୫) ସ୍ୱାତୀ | (୨୪) ଶତଭିଷା |
| (୭) ପୁନର୍ବସୁ | (୧୬) ବିଶାଖା | (୨୫) ପୂର୍ବଭାଦ୍ରପଦ |
| (୮) ପୁଷ୍ୟା | (୧୭) ଅନୁରାଧା | (୨୬) ଉତ୍ତରଭାଦ୍ରପଦ |
| (୯) ଅଶ୍ଳେଷା | (୧୮) ଜ୍ୟେଷ୍ଠା | (୨୭) ରେବତୀ |

ଏହି ନକ୍ଷତ୍ରମାନେ ପ୍ରତ୍ୟେକ ୪ ପାଦରେ ବିଭକ୍ତ ।

∴ ୨୭ ଗୋଟି ନକ୍ଷତ୍ର $=$ ୨୭ $\times$ ୪ $=$ ୧୦୮ ପାଦ । ଏହି ପାଦଗୁଡ଼ିକୁ ୧୨ ସମାନ ଭାଗକଲେ ୧ ଭାଗ $= \frac{\text{୧୦୮}}{\text{୧୨}} =$ ୯ ପାଦ

ଅତଏବ ନକ୍ଷତ୍ରମାନଙ୍କର ୯ ଗୋଟି ପାଦ ହେଲେ ୧ ଗୋଟି ରାଶି ହୁଏ ।

ପ୍ରଥମ ନକ୍ଷତ୍ରର ଆରମ୍ଭଠାରୁ ପ୍ରଥମ ରାଶି ଆରମ୍ଭ ହୋଇଅଛି । କେଉଁ ନକ୍ଷତ୍ରର କେଉଁ ପାଦଠାରୁ କେଉଁ ନକ୍ଷତ୍ରର କେଉଁ ପାଦ ପର୍ଯ୍ୟନ୍ତ ପ୍ରତ୍ୟେକ ରାଶି ବିସ୍ତୃତ, ତାହା ନିମ୍ନରେ ଦିଆଗଲା ।

| ନକ୍ଷତ୍ର ପାଦ | ରାଶି | ନକ୍ଷତ୍ର ପାଦ | ରାଶି |
|---|---|---|---|
| ୪ ପାଦ ଅଶ୍ୱିନୀ<br>୪ ପାଦ ଭରଣୀ<br>୧ ପାଦ କୃତ୍ତିକା | ମେଷ ରାଶି | ୨ ପାଦ ଚିତ୍ରା<br>୪ ପାଦ ସ୍ୱାତୀ<br>୩ ପାଦ ବିଶାଖା | ତୁଳାରାଶି |
| ୩ ପାଦ କୃତ୍ତିକା<br>୪ ପାଦ ରୋହିଣୀ<br>୨ ପାଦ ମୃଗଶିର | ବୃଷରାଶି | ୧ ପାଦ ବିଶାଖା<br>୪ ପାଦ ଅନୁରାଧା<br>୪ ପାଦ ଜ୍ୟେଷ୍ଠା | ବିଛାରାଶି |
| ୨ ପାଦ ମୃଗଶିର<br>୪ ପାଦ ଆର୍ଦ୍ରା<br>୩ ପାଦ ପୁନର୍ବସୁ | ମିଥୁନରାଶି | ୪ ପାଦ ମୂଳା<br>୪ ପାଦ ପୂର୍ବାଷାଢ଼ା<br>୧ ପାଦ ଉତ୍ତରାଷାଢ଼ା | ଧନୁରାଶି |
| ୧ ପାଦ ପୁନର୍ବସୁ<br>୪ ପାଦ ପୁଷ୍ୟା<br>୪ ପାଦ ଅଶ୍ଳେଷା | କର୍କଟ ରାଶି | ୩ ପାଦ ଉତ୍ତରାଷାଢ଼ା<br>୪ ପାଦ ଶ୍ରବଣା<br>୨ ପାଦ ଧନିଷ୍ଠା | ମକରରାଶି |
| ୪ ପାଦ ମଘା<br>୪ ପାଦ ପୂ: ଫାଲ୍‌ଗୁନୀ<br>୧ ପାଦ ଉ: ଫାଲ୍‌ଗୁନୀ | ସିଂହରାଶି | ୨ ପାଦ ଧନିଷ୍ଠା<br>୪ ପାଦ ଶତଭିଷା<br>୩ ପାଦ ପୂ:ଭାଦ୍ରପଦ | କୁମ୍ଭରାଶି |
| ୩ ପାଦ ଉ: ଫାଲ୍‌ଗୁନୀ<br>୪ ପାଦ ହସ୍ତା<br>୨ ପାଦ ଚିତ୍ରା | କନ୍ୟାରାଶି | ୧ ପାଦ ପୂ:ଭାଦ୍ରପଦ<br>୪ ପାଦ ଉ:ଭାଦ୍ରପଦ<br>୪ ପାଦ ରେବତୀ | ମୀନରାଶି |

# ଦ୍ୱିତୀୟ ପରିଚ୍ଛେଦ

## ଲୋକାଲ ଓ ଷ୍ଟାଣ୍ଡାର୍ଡ ସମୟ

କୌଣସି ସ୍ଥାନରେ ସୂର୍ଯ୍ୟ ଠିକ୍ ମୁଣ୍ଡ ଉପରେ ଥିବା ସମୟକୁ ସେ ସ୍ଥାନର ଲୋକାଲ୍ ୧୨ ଘଣ୍ଟା ସମୟ ବୋଲାଯାଏ । କିନ୍ତୁ ପୃଥିବୀ ନିଜର ମେରୁଦଣ୍ଡରେ ୨୪ ଘଣ୍ଟାରେ ଥରେ ବୁଲୁଥିବାରୁ ଏବଂ ୨୪ ଘଣ୍ଟା ମଧ୍ୟରେ ପ୍ରତ୍ୟେକ ଦ୍ରାଘିମାରେ ସୂର୍ଯ୍ୟ ଏକଥର ମାତ୍ର ମୁଣ୍ଡ ଉପରକୁ ଆସନ୍ତି, ଅର୍ଥାତ୍ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ସମୟରେ ସୂର୍ଯ୍ୟ ମୁଣ୍ଡ ଉପରକୁ ଆସନ୍ତି । ତେଣୁ ସମସ୍ତ ଦ୍ରାଘିମାରେ ଥିବା ସ୍ଥାନମାନଙ୍କରେ ଲୋକାଲ୍ ସମୟ ସମାନ ନୁହେଁ ।

ପୃଥିବୀ ୩୬୦ ଗୋଟି ଦ୍ରାଘିମାରେ ବିଭକ୍ତ । ପ୍ରତ୍ୟେକ ଦ୍ରାଘିମା ୨୪ ଘଣ୍ଟାରେ ଥରେ ମାତ୍ର ସୂର୍ଯ୍ୟଙ୍କର ସଳଖ କିରଣ ପାଏ । ତେଣୁ ଗୋଟିଏ ଦ୍ରାଘିମା ପରେ ଅନ୍ୟ ଦ୍ରାଘିମାଟି ସୂର୍ଯ୍ୟଙ୍କର ସଳଖ କିରଣ ପାଇବା ପାଇଁ $\frac{\text{୨୪ଘଣ୍ଟା}}{\text{୩୬୦}}$ = ୪ମିନିଟ ସମୟ ଲାଗେ ।

ପୃଥିବୀ ପଶ୍ଚିମରୁ ପୂର୍ବକୁ ବୁଲୁଥିବାରୁ ଆମ୍ଭେମାନେ ଯେତେ ଡିଗ୍ରୀ ପୂର୍ବକୁ ଯିବା, ସେତେ ୪ମିନିଟ୍ ପୂର୍ବରୁ ସୂର୍ଯ୍ୟ ମୁଣ୍ଡ ଉପରକୁ ଆସିବେ । ତେଣୁ କୌଣସି ସ୍ଥାନର ଯେତେ ଡିଗ୍ରୀ ପୂର୍ବରେ ଅନ୍ୟ ସ୍ଥାନଟି ରହିବ, ସେ ସ୍ଥାନର ଲୋକାଲ୍ ସମୟ ପୂର୍ବସ୍ଥାନର ଲୋକାଲ୍ ସମୟ ଅପେକ୍ଷା ସେତେ ୪ମିନିଟ୍ ବଢିଯିବ । ସେହିପରି କୌଣସି ସ୍ଥାନର ଯେତେ ଡିଗ୍ରୀ ପଶ୍ଚିମରେ ଅନ୍ୟସ୍ଥାନଟି ରହିବ, ସେ ସ୍ଥାନର ଲୋକାଲ୍ ସମୟ ପୂର୍ବ ସ୍ଥାନର ଲୋକାଲ ସମୟ ଅପେକ୍ଷା ସେତେ ୪ମିନିଟ୍ କମିଯିବ ।

**୧ମ ଉଦାହରଣ—** ବମ୍ବେରେ ଲୋକାଲ ସମୟ ଯେବା ୧୦ଘଣ୍ଟା ସମୟରେ କଲିକତାରେ ଲୋକାଲ୍ ସମୟ କେତେ ?

ବମ୍ବେ ୭୨°୩୦′ ପୂର୍ବ ଦ୍ରାଘିମାରେ ଅବସ୍ଥିତ ଏବଂ କଲିକତା ୮୮°୩୦′ ପୂର୍ବ ଦ୍ରାଘିମାରେ ଅବସ୍ଥିତ ।

୮୮° ୩୦′— ୭୨°୩୦′ = ୧୬°

ଅତଏବ କଲିକତା ବମ୍ବେର ୧୬° ଦ୍ରାଘିମା ପୂର୍ବରେ ଅବସ୍ଥିତ

୧° କୁ ୪ ମିନିଟ୍

୧୬°କୁ = ୧୬ × ୪ = ୬୪ ମିନିଟ୍ = ଘ୧।୪ ମିନିଟ୍ ।

କଲିକତା ପୂର୍ବରେ ଥିବାରୁ କଲିକତାର ସମୟ ବମ୍ବେ ସମୟ ଅପେକ୍ଷା ଅଧିକ ହେବ ।

∴ କଲିକତାର ସମୟ = ଘ୧୦ + ଘ୧।୪ମିନିଟ୍ = ଘ୧୧।୪ମିନିଟ (ଉତ୍ତର)

୨ୟ ଉଦାହରଣ — କଲିକତାରେ ଲୋକାଲ ସମୟ ଦିବା ଘ୧।୩୦ ମିନିଟ୍ ସମୟରେ ବମ୍ବେରେ ଲୋକାଲ ସମୟ କେତେ ?

କଲିକତାର ୧୬° ପଶ୍ଚିମରେ ବମ୍ବେ ଥିବାରୁ କଲିକତା ସମୟର ବମ୍ବେ ସମୟ ଘ୧।୪ ମିନିଟ ପଛରେ ।

∴ ବମ୍ବେ ସମୟ = ଘ୧।୩୦ ମିନିଟ — ଘ୧।୪ ମିନିଟ = ଘ୧୨।୨୬ ମିନିଟ (ଉତ୍ତର)

ଏହିପରି ଭିନ୍ନ ଭିନ୍ନ ସ୍ଥାନରେ ଲୋକାଲ ସମୟ ଫରକ ଥିବାରୁ ସାଧାରଣ କାର୍ଯ୍ୟରେ (ଡାକ ବିଭାଗ, ରେଲ୍‌ବାଇ ଇତ୍ୟାଦି) ବହୁତ ବାଧା ହୁଏ । ସେଥିଲାଗି ସମସ୍ତ ସ୍ଥାନରେ ସମୟ ସମାନ ରଖିବା ପାଇଁ ପ୍ରତ୍ୟେକ ଦେଶରେ ସେ ଦେଶର ମଧ୍ୟସ୍ଥିତ କୌଣସି ସ୍ଥାନର ଲୋକାଲ୍ ସମୟକୁ ସମୁଦାୟ ଦେଶର ସମୟ ବୋଲି ଧରାଯାଏ । ଏହାକୁ ସେହି ଦେଶପାଇଁ ଷ୍ଟାଣ୍ଡାର୍ଡ ସମୟ ବୋଲାଯାଏ । ଆମ୍ଭମାନଙ୍କର ଭାରତବର୍ଷରେ ୮୨°୩୦′ ଦ୍ରାଘିମାର ଲୋକାଲ୍ ସମୟକୁ ସମୁଦାୟ ଦେଶର ସମୟ ବୋଲି ଧରାଯାଇଛି ।

## ଷ୍ଟାଣ୍ଡାର୍ଡ ସମୟରୁ ଲୋକାଲ ସମୟ ଆଣିବାର ପ୍ରଣାଳୀ:—

କୌଣସି ସ୍ଥାନ ୮୨°୩୦′ ଦ୍ରାଘିମାର ଯେତେ ଡିଗ୍ରୀ ପୂର୍ବରେ ଥିବ ଷ୍ଟାଣ୍ଡାର୍ଡ ସମୟରେ ସେତେ ୪ମିନଟ୍ ଯୋଗକଲେ ସେ ସ୍ଥାନର ଲୋକାଲ୍ ସମୟ ବାହାରେ । ସେହିପରି କୌଣସି ସ୍ଥାନ ୮୨°୩୦′ ଦ୍ରାଘିମାର ଯେତେ ଡିଗ୍ରୀ ପଶ୍ଚିମରେ ଥିବ, ଷ୍ଟାଣ୍ଡାର୍ଡ ସମୟରୁ ସେତେ ୪ମିନଟ୍ ବିୟୋଗ କଲେ ସେ ସ୍ଥାନର ଲୋକାଲ୍ ସମୟ ବାହାରେ ।

**ଉଦାହରଣ.**—ଦିବା ଘ୧୧ଣ୍ଟା ସମୟରେ ପୁରୀର ଲୋକାଲ୍ ସମୟ କେତେ ?

ପୁରୀର ଦ୍ରାଘିମା=୮୬°

୮୬° − ୮୨°୩୦ = ୩°୩୦′

୧°କୁ ୪ମିନଟ୍

୩°କୁ = ୪ × ୩ = ୧୨ମିନଟ୍

୩୦′କୁ = ୪ × ½ = ୨ମିନଟ୍

∴ ୩°୩୦′କୁ = ୧୪ମିନଟ୍

∴ ପୁରୀର ଲୋକାଲ୍ ସମୟ=ଘ୧୧+ଘ୦।୧୪ମିନଟ୍= ଘ୧୧।୧୪ମିନଟ୍ (ଦିବା)

# ତୃତୀୟ ପରିଚ୍ଛେଦ

## ଗ୍ରହସ୍ଫୁଟ

ରାଶିଚକ୍ରରେ ଗ୍ରହମାନଙ୍କର ସୂକ୍ଷ୍ମସ୍ଥାନକୁ ଗ୍ରହସ୍ଫୁଟ ବୋଲାଯାଏ । ଆଜିକାଲିକାର ପାଞ୍ଜିମାନଙ୍କରେ ସୂର୍ଯ୍ୟୋଦୟ ସମୟ ପାଇଁ ଦୈନିକ ନିରୟଣ ଗ୍ରହସ୍ଫୁଟ ଦିଆଥାଏ । ଜନ୍ମ ସମୟରେ ଗ୍ରହସ୍ଫୁଟ ବାହାର କରିବାକୁ ହେଲେ ଜନ୍ମ ସମୟ ସୂର୍ଯ୍ୟୋଦୟର କେତେ ଘଣ୍ଟା ପରେ ତାହା ବାହାର କରାଯାଏ । ଜନ୍ମସମୟର ପୂର୍ବ ସୂର୍ଯ୍ୟୋଦୟ ଓ ପର ସୂର୍ଯ୍ୟୋଦୟ ସମୟର ଗ୍ରହସ୍ଫୁଟ ମଧ୍ୟରେ ବ୍ୟବଧାନ ଗ୍ରହମାନଙ୍କର ୨୪ଘଣ୍ଟାର ଗତି ସଙ୍ଗେ ସମାନ । କାରଣ ଦୁଇ ସୂର୍ଯ୍ୟୋଦୟ ମଧ୍ୟରେ ବ୍ୟବଧାନ ୨୪ଘଣ୍ଟା ଅଟେ । ୨୪ଘଣ୍ଟା ପାଇଁ ଗତି ବାହାରିଲେ ପୂର୍ବ ସୂର୍ଯ୍ୟୋଦୟ ଓ ଜନ୍ମସମୟ ମଧ୍ୟରେ ବ୍ୟବଧାନ ପାଇଁ ଗ୍ରହମାନଙ୍କର ଗତି ନିର୍ଣ୍ଣୟ କରାଯାଏ ଏବଂ ଉକ୍ତ ଫଳ ଗ୍ରହମାନଙ୍କର ଅଗ୍ର ଓ ପଶ୍ଚାଦ୍ଗମନ ଅନୁଯାୟୀ ଜନ୍ମପୂର୍ବ ସୂର୍ଯ୍ୟୋଦୟର ଗ୍ରହସ୍ଫୁଟ ସଙ୍ଗେ ଯୋଗ କିମ୍ବା ବିଯୋଗ କରାଯାଏ ।

ଉଦାହରଣ—୧୯୪୫ ମସିହା ଜାନୁୟାରି ୭ତାରିଖ ରାତି ଘ୧୦ଣ୍ଟା (ଯୁଦ୍ଧକାଳୀନ) ସମୟରେ ଅର୍ଥାତ୍ ରାତି ଘ୯ଣ୍ଟା ଷ୍ଟାଣ୍ଡାର୍ଡ ସମୟରେ କଟକରେ କନ୍ୟା ଜନ୍ମ ।

ତା୭ରିଖ ରାତି ଘ୯ଣ୍ଟା ସମୟର ପୂର୍ବ ସୂର୍ଯ୍ୟୋଦୟ ତା୭ରିଖ ସକାଳର ସୂର୍ଯ୍ୟୋଦୟ ଅଟେ । ତା୭ରିଖ ରାତି ଘ୯ଣ୍ଟା ସମୟର ପର ସୂର୍ଯ୍ୟୋଦୟ ତା୮ରିଖ ସକାଳର ସୂର୍ଯ୍ୟୋଦୟ ଅଟେ ।

ପାଠକଙ୍କର ସୁବିଧା ନିମନ୍ତେ ୧୯୪୫ ମସିହା ଜାନୁୟାରି ୭,୭ ୮ ତାରିଖର ପାଞ୍ଜିର ନମୁନା ନିମ୍ନରେ ଦିଆଗଲା ।

ପୌଷ ୨୩ଦିନ ଜାନୁୟାରୀ ୬ତାରିଖ ମହରମ ୨୦ତାରିଖ ଶନିବାର

ଅଷ୍ଟମୀ ୬୦ଦଣ୍ଡ | × × ×
× × ×
ହସ୍ତା ନକ୍ଷତ୍ର ଦ୩୩।୨୩ ଘ୭।୫୭ | × × ×

ପୌଷ ୨୪ଦିନ ଜାନୁୟାରୀ ୭ତାରିଖ ମହରମ ୨୧ତାରିଖ ରବିବାର

ଅଷ୍ଟମୀ ଦ୩।୨ ଘ୭।୪୮ | ଧନୁ ଦ୪।୨।୩୦
ଚିତ୍ରା ନକ୍ଷତ୍ର ଦ୪୨।୫୧ ଘ୧୦।୨୫ | ଇଂ ଘ୭।୩୪।୪୮ ପ ଉଦୟ
ରବ୍ୟଂଶ ୨୨୩।୭।୪୬ | ମିଥୁନ ଦ୪।୪୮।୫୭
ସ୍ଫୁଟଚନ୍ଦ୍ର ସ୫।୨୮।୩୩।୪୪ | ଇଂ ଘ୫।୨୫।୧୨ ଗ ଅସ୍ତ
× × ×
ଦିନାର୍ଦ୍ଧ ଦ୧୩।୩୩ | × × ×

ମ୮।୬।୨୦।୪୬, ବୁ୮।୦।୫୫।୩୬, ବୃ୫।୪।୧୨।୫୧ ଶୁ ୧୦ ୮।-
୨୮।୧୮, ଶ୨।୧୩।୦।୨୪, ରା୨।୨୫।୧୩।୨୮, କେ୮।୨୫।୧୩।୨୮

ପୌଷ ୨୫ ଦିନ ଜାନୁୟାରୀ ୮ତାରିଖ ମହରମ ୨୨ତାରିଖ ସୋମବାର

× × × | ଧନୁ ଦ୪।୧୩।୧୦
× × × | ଇଂ ଘ୭।୩୪।୨୪ଗ ଉଦୟ
ରବ୍ୟଂଶ ୨ ୨୪।୬।୫୬ | × × ×
ସ୍ଫୁଟଚନ୍ଦ୍ର ସ୬।୧୦।୨୬।୨୮ | × × ×

ମ୮।୮।୪।୫୨, ବୁ୮।୧।୪୪।୧୩, ବୃ୫।୪।୧୪।୧୨, ଶୁ୧୦।୯।୩୬।୨୪, ଶ୨।୧୨।୫୫।୩୦, ରା୨।୨୫।୧୦।୧୬; କେ୮।୨୫।୧୦।୧୬

ସକ ଘ୯ଣ୍ଟା ଷ୍ଟାଣ୍ଡାର୍ଡ ସମୟରେ କନ୍ୟା ଜନ୍ମ । କଟକର ଦ୍ରାଘିମା ୮୫°୫୩' । ଗଣନା ପାଇଁ ୮୬° ବୋଲି ଧରାଯାଉ ।

୮୬° − ୮୨°୩୦' = ୩°୩୦'

୧°କୁ ୪ମିନଟ୍

୩°୩୦'କୁ ୩½ × ୪ = $\frac{୭×୪}{୨}$ = ଘ୦।୧୪ମିନଟ୍

କଟକ ୮୨°୩୦'ର ପୂର୍ବରେ ଥିବାରୁ ଘ୯ଣ୍ଟା ଷ୍ଟାଣ୍ଡାର୍ଡ ସମୟରେ ଲୋକାଲ ସମୟ=ଘ୯+ଘ୦।୧୪ମିନଟ୍=ଘ୯।୧୪

ମିନଟ୍ । ବର୍ତ୍ତମାନ ସ୍ୱନ ଘ୯।୧୪ ପାଇଁ ଗ୍ରହସ୍ଫୁଟ ବାହାର କରାଯାଉ ।
ସ୍ୱନ. ଘ୯।୧୪=ଘ୯।୧୪+ଘ୧୨ଣ୍ଟା=ଘ୨୧।୧୪ମିନଟ୍ ।

ଉକ୍ତ ଦିନରେ ସୂର୍ଯ୍ୟୋଦୟ ଘ୬।୩୫ ମିନଟ୍ ।

∴ ସୂର୍ଯ୍ୟୋଦୟ ଓ ଜନ୍ମ ସମୟ ମଧ୍ୟରେ ବ୍ୟବଧାନ=
ଘ୨୧।୧୪ − ଘ୬।୩୫=ଘ୧୪।୩୯ ମିନଟ୍ ।

ତା୭ରିଖ ସୂର୍ଯ୍ୟୋଦୟ ସମୟରେ ସ୍ପଷ୍ଟଚନ୍ଦ୍ର ରା୫।୨୮।୩୩।୪୪
ଏହାର ଅର୍ଥ କ'ଣ ?

ଏହାର ଅର୍ଥ ଏହି ଯେ, ଚନ୍ଦ୍ର ୫ ରାଶି ଅତିକ୍ରମ କରି ୬ଷ୍ଠ ରାଶିରେ ୨୮ଡିଗ୍ରୀ ଅଂଶ) ୩୩ମିନଟ୍ (କଳା) ୪୪ ସେକେଣ୍ଡ (ବିକଳା)ଠାରେ ଅଛନ୍ତି ।

୧ରାଶି=୩୦°

୫ରାଶି=୩୦×୫=୧୫୦°

ରା୫।୨୮।୩୪ମିନଟ୍=୧୫୦°+୨୮°୩୪′=୧୭୮°୩୪′

ଜାନୁୟାରୀ ୮ତାରିଖ ସୂର୍ଯ୍ୟୋଦୟ ସମୟରେ ସ୍ପଷ୍ଟଚନ୍ଦ୍ର ରା୬।୧୦।୨୭।୨୮

୬ରାଶି=୬×୩୦=୧୮୦°

ରା୬।୧୦।୨୭=୧୮୦°+୧୦°୨୭′=୧୯୦°୨୭′

∴ ୨୪ଘଣ୍ଟା ମଧ୍ୟରେ ଚନ୍ଦ୍ରଙ୍କର ଗତି=୧୯୦°୨୭′ − ୧୭୮°୩୪′=୧୧°୫୩′

୨୪ଘଣ୍ଟା=୨୪×୬୦=୧୪୪୦ମିନଟ୍

୧୧°୫୩′=(୧୧×୬୦)+୫୩ମିନଟ୍=୬୬୦+୫୩=୭୧୩ମିନଟ୍

ଘ୧୪।୩୯ ମିନଟ୍=(୧୪×୬୦)+୩୯ ମିନଟ୍=୮୪୦+୩୯ମିନଟ୍=୮୭୯ମିନଟ୍

୧୪୪୦ମିନଟ୍‌କୁ ଚନ୍ଦ୍ରଙ୍କର ଗତି=୭୧୩ମିନଟ୍

∴ ୮୭୯ ମିନଟ୍‌ରୁ ଚନ୍ଦ୍ରଙ୍କର ଗତି $=\frac{୭୧୩\times୮୭୯}{୧୪୪୦}=\frac{୬୨୬୭୨୭}{୧୪୪୦}$
$=$ ୪୩୫ ମିନଟ (ପ୍ରାୟ) $=$ ୭°୧୫′

∴ ଘ ୧୪।୩୯ ମିନଟ୍‌ରେ ଚନ୍ଦ୍ର ୭°୧୫′ ଅଗ୍ରଗତି କରୁଛନ୍ତି ।

∴ ଜନ୍ମ ସମୟରେ ଚନ୍ଦ୍ର ସ୍ଫୁଟ = ପୂର୍ବ ସୂର୍ଯ୍ୟୋଦୟ ସମୟରେ ଚନ୍ଦ୍ର ସ୍ଫୁଟ + ଜନ୍ମସମୟ ପର୍ଯ୍ୟନ୍ତ ଚନ୍ଦ୍ରଙ୍କର ଅଗ୍ରଗତି

= ୧୭୮°୩୪′ + ୭°୧୫′ = ୧୮୫°୪୯′ ।

$୧୮୫° = \frac{୧୮୫}{୩୦} = ୬\frac{୫}{୩୦}$ = ରା ୬।୫

∴ ୧୮୦୫°୪୯′ = ରା ୬।୫।୪୯ ଅର୍ଥାତ୍ ଜନ୍ମ ସମୟରେ ଚନ୍ଦ୍ର ୬ ରାଶି ଅତିକ୍ରମ କରି ୭ମ ରାଶିରେ ଅର୍ଥାତ୍ ତୁଳା ରାଶିରେ ୫°୪୯′ ଠାରେ ଅଛନ୍ତି ।

୭ ତାରିଖ ସୂର୍ଯ୍ୟୋଦୟ ସମୟରେ ମଙ୍ଗଳଙ୍କର ସ୍ଫୁଟ = ରା ୮।୭ ୨୧ ମିନଟ = ୨୪୭°୨୧′

୮ ତାରିଖ ସୂର୍ଯ୍ୟୋଦୟ ସମୟରେ ମଙ୍ଗଳଙ୍କର ସ୍ଫୁଟ = ରା ୮।୮।୫ = ୨୪୮°୫′

∴ ୨୪ ଘଣ୍ଟା ମଧ୍ୟରେ ମଙ୍ଗଳଙ୍କର ଗତି ୨୪୮°୫′ − ୨୪୭°୨୧′ = ୦°୪୪′

∴ ଘ ୧୪।୩୯ ମିନଟ୍‌ରେ ମଙ୍ଗଳଙ୍କର ଗତି $=\frac{୪୪\times୮୭୯}{୧୪୪୦}$

$=\frac{୩୮୬୭୬}{୧୪୪୦}$ = ୨୭ ମିନଟ୍ (ପ୍ରାୟ)

∴ ଜନ୍ମ ସମୟରେ ମଙ୍ଗଳଙ୍କର ସ୍ଫୁଟ = ୨୪୭°୨୧′ + ୦°୨୭′ = ୨୪୭°୪୮′ = ରା ୮।୭।୪୮ ଅର୍ଥାତ୍ ମଙ୍ଗଳ ଧନୁରାଶିରେ ୭°୪୮′ରେ ଅଛନ୍ତି ।

୭ ତାରିଖ ସୂର୍ଯ୍ୟୋଦୟ ସମୟରେ ବୁଧଙ୍କର ସ୍ଫୁଟ = ରା ୮।୦।୫୨ = ୨୪୦°୫୨′

୮ ତାରିଖ ସୂର୍ଯ୍ୟୋଦୟ ସମୟରେ ବୁଧଙ୍କର ସ୍ଫୁଟ=ରା୮।୧।୪୪ =୨୪୧°୪୪′

∴ ୨୪ ଘଣ୍ଟା ମଧ୍ୟରେ ବୁଧଙ୍କର ଗତି=୨୪୧°୪୪′ – ୨୪°୦୫୬′=୦°୪୮′

∴ ଘ ୧୪।୪୮ ମିନିଟ୍ ମଧ୍ୟରେ ବୁଧଙ୍କର ଗତି=$\frac{୪୮ \times ୮୬୯}{୧୪୪୦}$ =୦°୨୯′ ।

∴ ଜନ୍ମ ସମୟରେ ବୁଧଙ୍କର ସ୍ଫୁଟ=୨୪୦°୫୬′+୦°୨୯′= ୨୪୧°୨୫′=ରା ୮।୧।୨୫ (ଧନୁରାଶି)

୭ତାରିଖ ସୂର୍ଯ୍ୟୋଦୟ ସମୟରେ ଶୁକ୍ରଙ୍କର ସ୍ଫୁଟ = ରା୧୦। ୮।୨୯=୩୦୮°୨୯ ।

୮ ତାରିଖ ସୂର୍ଯ୍ୟୋଦୟ ସମୟରେ ଶୁକ୍ରଙ୍କର ସ୍ଫୁଟ=ରା୧୦।୯ ୩୭=୩୦୯°୩୭′

∴ ୨୪ଘଣ୍ଟା ମଧ୍ୟରେ ଶୁକ୍ରଙ୍କର ଗତି=୩୦୯°୩୭′ – ୩୦୮°୨୯′=୧°୮′=୬୮ ମିନିଟ୍

∴ ଘ୧୪।୪୯ମିନିଟରେ ଶୁକ୍ରଙ୍କର ଗତି=$\frac{୬୮ \times ୮୬୯}{୧୪୪୦}$= ୦°୪୨′ (ପ୍ରାୟ)

∴ ଜନ୍ମ ସମୟରେ ଶୁକ୍ରଙ୍କର ସ୍ଫୁଟ=୩୦୮°୨୯′+୦°୪୨′= ୩୦୯°୧୧′=ରା୧୦।୯।୧୧ (କୁମ୍ଭରାଶି) ।

ସେହିପରି ଜନ୍ମସମୟରେ ଗୁରୁଙ୍କର ସ୍ଫୁଟ=ରା୫।୪।୧୪ (କନ୍ୟାରାଶି)

ଶନିଙ୍କର ସ୍ଫୁଟ=ରା୨।୧୨।୫୭ (ମିଥୁନ ରାଶି)

ରାହୁଙ୍କର ସ୍ଫୁଟ=ରା୨।୨୫।୧୨ (ମିଥୁନ ରାଶି)

କେତୁଙ୍କର ସ୍ଫୁଟ=ରା୮।୨୫।୧୨ (ଧନୁ ରାଶି)

ଶନି, ରାହୁ ଓ କେତୁ ପଶ୍ଚାଦ୍‌ଗମନ କରୁଥିବାରୁ ତା୭ରିଖ ସୂର୍ଯ୍ୟୋଦୟ ସମୟରେ ସେମାନଙ୍କର ସ୍ଫୁଟରୁ ଜନ୍ମସମୟ ପର୍ଯ୍ୟନ୍ତ ସେମାନଙ୍କର ଗତି ବିଯୋଗ କରାଗଲା ।

**ରବିଙ୍କର ସ୍ଫୁଟ:**—ସୂର୍ଯ୍ୟ ଏକଗୋଟି ରାଶିରେ ଏକଗୋଟି ସୌରମାସ ରହନ୍ତି । ତେଣୁ ସୌରମାସରୁ ରାଶିଚକ୍ରରେ ସୂର୍ଯ୍ୟଙ୍କର ସ୍ଥିତି ଜଣାଯାଏ । କେଉଁ ସୌରମାସରେ ସୂର୍ଯ୍ୟ କେଉଁ ରାଶିରେ ରହନ୍ତି, ତାହା ନିମ୍ନରେ ଦିଆଗଲା ।

| ସୌରମାସ | ରାଶି | ସୌରମାସ | ରାଶି |
|---|---|---|---|
| ବୈଶାଖ | ମେଷ | କାର୍ତ୍ତିକ | ତୁଳା |
| ଜ୍ୟେଷ୍ଠ | ବୃଷ | ମାର୍ଗଶିର | ବିଛା |
| ଆଷାଢ଼ | ମିଥୁନ | ପୌଷ | ଧନୁ |
| ଶ୍ରାବଣ | କର୍କଟ | ମାଘ | ମକର |
| ଭାଦ୍ର | ସିଂହ | ଫାଲ୍‌ଗୁନ | କୁମ୍ଭ |
| ଆଶ୍ୱିନ | କନ୍ୟା | ଚୈତ୍ର | ମୀନ |

ପୌଷମାସରେ ଜନ୍ମ ହୋଇଥିବାରୁ ଜନ୍ମମାସରେ ସୂର୍ଯ୍ୟ ଧନୁ ରାଶିରେ ଥିଲେ ଅର୍ଥାତ୍ ୮ରାଶି ଅତିକ୍ରମ କରିଥିଲେ । ତାରିଖ ଦିନ ରବ୍ୟଂଶ=୧୨।୩।୨।୪୨

∴ ୭ତାରିଖ ଦିନ ସୂର୍ଯ୍ୟୋଦୟ ସମୟରେ ରବିଙ୍କର ସ୍ଫୁଟ= ରା୮।୨୩।୨।୪୬=୨୬୩°୨′ (ପ୍ରାୟ)

ସେହିପରି ୮ତାରିଖ ଦିନ ସୂର୍ଯ୍ୟୋଦୟ ସମୟରେ ରବିଙ୍କର ସ୍ଫୁଟ =ରା୮।୨୪।୨।୫୨=୨୬୪°୮′ (ପ୍ରାୟ)

∴ ୨୪ ଘଣ୍ଟାରେ ରବିଙ୍କର ଗତି=୨୬୪°୮′ – ୨୬୩°୨′ =୧°୧′=୬୧ ମିନିଟ୍ ।

∴ ଘ୧୪।୩୯ ମିନିଟ୍‌ରେ ରବିଙ୍କର ଗତି= $\frac{୬୧ \times ୮୨୯}{୧୪୪୦}$ =୦°୩୨′

∴ ଜନ୍ମ ସମୟରେ ରବିଙ୍କର ସ୍ଫୁଟ=୨୬୩°୨°+୦°୩୨′ =୨୬୩°୪୪′=ରା୮।୨୩।୪୪

---

# ଲଗ୍ନ ସ୍ଫୁଟ

ପୃଥିବୀ ନିଜର ମେରୁଦଣ୍ଡର ଚତୁର୍ଦ୍ଦିଗରେ ଭ୍ରମଣ କରୁଥିବାରୁ ପୃଥିବୀର ଯେ କୌଣସି ସ୍ଥାନ କ୍ରମାନ୍ୱୟରେ ପୂର୍ବୋକ୍ତ ୧୨ଗୋଟି ରାଶିର ସମ୍ମୁଖୀନ ହୁଏ । ଯେଉଁ ସମୟରେ ଯେଉଁ ସ୍ଥାନର ପୂର୍ବ ଦିଗ୍‌ବଳୟରେ ଯେଉଁ ରାଶି ଦୃଶ୍ୟ ହୁଏ, ସେହି ରାଶିକୁ ସେହି ସ୍ଥାନର ସେହି ସମୟ ପାଇଁ ଲଗ୍ନ ବୋଲିଯାଏ ।ସୂର୍ଯ୍ୟ ଯେଉଁ ମାସରେ ଯେଉଁ ରାଶିରେ ଉଦିତ ହୁଅନ୍ତି,ସେହି ମାସକୁ ସେହି ରାଶିର ନାମ ଦିଆ ଯାଇଅଛି । ଯଥା ବୈଶାଖ ମାସରେ ସୂର୍ଯ୍ୟ ମେଷ ରାଶିରେ ଉଦିତ ହେଉଥିବାରୁ ବୈଶାଖ ମାସକୁ ମେଷମାସ ବୋଲିଯାଏ । ସେହିପରି ଜ୍ୟେଷ୍ଠ ମାସରେ ସୂର୍ଯ୍ୟ ବୃଷ ରାଶିରେ ଉଦିତ ହେଉଥିବାରୁ ଜ୍ୟେଷ୍ଠ ମାସକୁ ବୃଷମାସ ବୋଲିଯାଏ । ଏଥିରୁ ଜଣା ଯାଉଅଛି ଯେ, ସୂର୍ଯ୍ୟ ଯେଉଁ ଦିନ ଯେଉଁ ରାଶିରେ ଥାଆନ୍ତି ସେହି ଦିନ ସେହି ରାଶିରେ ଉଦିତ ହୁଅନ୍ତି । ଏପରିକି ସୂର୍ଯ୍ୟ ଯେଉଁ ଦିନ ଯେଉଁ ରାଶିରେ ଯେତେ ଡିଗ୍ରୀଠାରେ ଥାଆନ୍ତି, ସେହିଦିନ ସେହି ରାଶିରେ ସେତିକି ଡିଗ୍ରିଠାରେ ଉଦିତ ହୁଅନ୍ତି । ଉଦାହରଣ ସ୍ୱରୂପ ସୂର୍ଯ୍ୟ ପୌଷ ଦି୨୪ନ ଧନୁ ରାଶିରେ ୨୩°୭'ଠାରେ ଥିବାରୁ ସେଦିନ ସୂର୍ଯ୍ୟ ଧନୁ ରାଶିର ୨୩°୭'ଠାରେ ଉଦିତ ହୋଇଅଛନ୍ତି ।

ପୂର୍ବରୁ କୁହାଯାଇଅଛି ଯେ, ଯେଉଁ ସ୍ଥାନରେ ଯେଉଁ ସମୟରେ ପୂର୍ବ ଦିଗ୍‌ବଳୟରେ ଯେଉଁ ରାଶି ଦୃଶ୍ୟ ହୁଏ, ସେହି ରାଶିକୁ ସେହି ସମୟ ପାଇଁ ଲଗ୍ନ ବୋଲିଯାଏ । ତେଣୁ ସୂର୍ଯ୍ୟ ପୌଷ ୨୪ଦିନ ଧନୁ ରାଶିରେ ୨୩°୭' ମିନିଟଠାରେ ଉଦିତ ହୋଇଥିବାରୁ ସେହିଦିନ ସୂର୍ଯ୍ୟୋଦୟ ସମୟରେ ଧନୁଲଗ୍ନ ହୋଇଥିଲା ଏବଂ ସେହି ଲଗ୍ନରୁ ୨୩°୭ ମିନିଟ୍ ଭୁକ୍ତ ହୋଇଥିଲା । ସେହିପରି ଯେକୌଣସି ଦିନରେ

ରବିଙ୍କର ରାଶିଚକ୍ରରେ ସ୍ଥାନ ଓ ରବ୍ୟଂଶରୁ ସେଦିନ ଉଦୟ ସମୟରେ ଲଗ୍ନ ଏବଂ ତାହାର * ଭୁକ୍ତାଂଶ ଜଣାଯାଏ ।

**ଲଗ୍ନର ମାନ (କାଳ):**—ପୃଥିବୀର ଅଣ୍ଡାକୃତି ହେତୁ ଯେ କୌଣସି ସ୍ଥାନ ସମାନ ସମୟ ପାଇଁ ପ୍ରତ୍ୟେକ ରାଶିର ସମ୍ମୁଖୀନ ନ ହୋଇ ପ୍ରତ୍ୟେକ ସ୍ଥାନ ଅଳ୍ପ ସମୟ ପାଇଁ କେଉଁ ରାଶିର ଏବଂ ବହୁତ ସମୟ ପାଇଁ କେଉଁ ରାଶିର ସମ୍ମୁଖୀନ ହୁଏ । ତେଣୁ କୌଣସି ସ୍ଥାନରେ ପ୍ରତ୍ୟେକ ଲଗ୍ନର ମାନ ସମାନ ନୁହେଁ ।

ଭିନ୍ନ ଭିନ୍ନ ଅକ୍ଷାଂଶରେ ପ୍ରତ୍ୟେକ ଲଗ୍ନର ମାନ ପରିବର୍ତ୍ତିତ ହୁଏ । ଭିନ୍ନ ଭିନ୍ନ ଅକ୍ଷାଂଶରେ ଲଗ୍ନମାନ ନିର୍ଣ୍ଣୟ ପରି ଜଟିଳ ସମାସ୍ୟାର ସମାଧାନ ଏହି କ୍ଷୁଦ୍ର ପୁସ୍ତକଟିର ଉଦ୍ଦେଶ୍ୟ ନୁହେଁ । ପାଠକଙ୍କର ସୁବିଧା ନିମନ୍ତେ ଓଡିଶାର ଭିନ୍ନ ଭିନ୍ନ ଅକ୍ଷାଂଶରେ ଥିବା କେତୋଟି ପ୍ରଧାନ ସ୍ଥାନରେ ଲଗ୍ନମାନ ଏ ପୁସ୍ତକର ଶେଷରେ ଯୋଗକରି ଗଲା ।

**ଲଗ୍ନ ନିରୂପଣ:**—ଲଗ୍ନ ନିରୂପଣ ପାଇଁ ଦୁଇ ଗୋଟି ପ୍ରଣାଳୀ ନିମ୍ନରେ ଦିଆଗଲା । ପ୍ରଥମ ପ୍ରଣାଳୀଟି ସହଜ ଏବଂ ତଦ୍ୱାରା ଅଳ୍ପ ସମୟ ମଧ୍ୟରେ ଲଗ୍ନ ନିରୂପିତ ହୋଇ ପାରିବ । କିନ୍ତୁ ଏଥିରେ ଲଗ୍ନସ୍ଫୁଟ ୧।୨ ଡିଗ୍ରୀ ଭୁଲ ହୋଇପାରେ । ତେଣୁ ଏହା ମୋଟାମୋଟି ଲଗ୍ନ ନିରୂପଣ ପାଇଁ ପ୍ରଯୁଜ୍ୟ । ମାତ୍ର କୌଣସି ରାଶିର ସନ୍ଧି ସ୍ଥାନରେ ଲଗ୍ନ ନିରୂପିତ ହେଲେ ୨ୟ ପ୍ରଣାଳୀ ଦ୍ୱାରା ପରୀକ୍ଷା କରିବା ଉଚିତ । ୨ୟ ପ୍ରଣାଳୀରେ ଲଗ୍ନ ନିରୂପଣ କଲେ ଟିକିଏ ଅଧିକ ସମୟ ଲାଗେ ସତ୍ୟ; ମାତ୍ର ତଦ୍ୱାରା ଲଗ୍ନର ସ୍ଥାନ ଠିକ ରୂପେ ନିରୂପିତ ହୁଏ ।

---

* ଯେଉଁ ଲଗ୍ନରୁ ଯେତେ ଡିଗ୍ରୀ ଭୁକ୍ତ ହୋଇଅଛି । ତାହାକୁ ସେହି ଲଗ୍ନର ଭୁକ୍ତାଂଶ ବୋଲି ଯାଏ ।

ତେଣୁ ଲଗ୍ନସ୍ଫୁଟ ଠିକ୍ ରୂପେ ନିରୂପଣ କରିବାକୁ ହେଲେ ୨ୟ ପ୍ରଣାଳୀକୁ ଅବଲମ୍ବନ କରିବା ଉଚିତ ।

ପ୍ରଥମ ପ୍ରଣାଳୀ:—ଲଗ୍ନର ମାନ ଦଣ୍ଡ ଓ ଲିପ୍ତାରେ ଦିଆ ଯାଇଥିବାରୁ ଜନ୍ମ ସମୟକୁ ଦଣ୍ଡ ଓ ଲିପ୍ତାରେ ପରିଣତ କର । ସୂର୍ଯ୍ୟ ଯେଉଁ ଲଗ୍ନରେ ଉଦିତ ହୋଇଥିବେ, ସେହି ଲଗ୍ନାରମାନକୁ ସେହି ଦିନର ରବ୍ୟଂଶରେ ଗୁଣନ କରି ୩୦° ଦ୍ୱାରା ଭାଗକର । ଭାଗଫଳ ସେହି ଲଗ୍ନର ଭୁକ୍ତକାଳ ଅଟେ । ଲଗ୍ନର ମାନରୁ ଭୁକ୍ତକାଳ ବିଯୋଗ କଲେ ଅବଶିଷ୍ଟ ଯାହା ରହେ, ତାହା ସେହି ଲଗ୍ନର ଭୋଗ୍ୟକାଳ ଅଟେ । ଏହି ଭୋଗ୍ୟ କାଳ ସହିତ ଜନ୍ମ ସମୟ ପର୍ଯ୍ୟନ୍ତ ପରବର୍ତ୍ତୀ ଲଗ୍ନମାନଙ୍କର କାଳ ଯୋଗକର । ଯେଉଁ ଲଗ୍ନର କାଳରେ ଜନ୍ମ ସମୟ ପଡ଼େ, ସେହି ଲଗ୍ନକୁ ଜନ୍ମ ସମୟର ଲଗ୍ନ ବୋଲିଯାଏ । ଲଗ୍ନର ସ୍ଫୁଟ ବାହାର କରିବାକୁ ହେଲେ ଲଗ୍ନର ଭୁକ୍ତକାଳକୁ ୩୦° ଦ୍ୱାରା ଗୁଣି ସେହି ଲଗ୍ନର କାଳ ଦ୍ୱାରା ଭାଗକର । ଲଗ୍ନ ସେହି ରାଶିର କେତେ ଡିଗ୍ରିରେ ଅଛି, ତାହା ଭାଗଫଳରୁ ଜଣାଯାଏ ।

ଇଂରାଜୀ ଜନ୍ମ ସମୟକୁ ସେହି ଦିନର ଦଣ୍ଡ ଓ ଲିପ୍ତାରେ ପରିଣତ କରିବାର ନିୟମ—ଖ୍ରୀଷ୍ଟିୟାନମାନଙ୍କର ଗୋଟିଏ ଦିନ ପୂର୍ବ ଦିନ ରାତ୍ରି ୧୨ଘଣ୍ଟାରେ ଆରମ୍ଭ ହୋଇ,ସେହିଦିନ ରାତ୍ରି ୧୨ଘଣ୍ଟାରେ ଶେଷ ହୁଏ । ମାତ୍ର ହିନ୍ଦୁମାନଙ୍କର ଦିନ ସୂର୍ଯ୍ୟୋଦୟଠାରୁ ଆରମ୍ଭ ହୋଇ ପରଦିନ ସୂର୍ଯ୍ୟୋଦୟଠାରେ ଶେଷହୁଏ । ହିନ୍ଦୁମାନଙ୍କର ସୂର୍ଯ୍ୟୋଦୟଠାରୁ ସେଦିନର ପ୍ରଥମ ଦଣ୍ଡ ଆରମ୍ଭ ହୁଏ । ପରଦିନ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଦିନରାତ୍ରି ମିଶି ୬୦ ଦଣ୍ଡ ହୁଏ । ସୂର୍ଯ୍ୟୋଦୟଠାରୁ ପରଦିନ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ୨୪ଘଣ୍ଟା ହେଉଥିବାରୁ ୧ଘଣ୍ଟା= $\frac{୬୦}{୨୪}$ ଦଣ୍ଡ= ୨ $\frac{୧}{୨}$ ଦଣ୍ଡ । ୧ଦଣ୍ଡ= ୬୦ଲିପ୍ତା ।

୨½ ଦଣ୍ଡ=ଦ୨।୩୦ ଲିପ୍ତା ।

ଇଂରାଜୀ ଲୋକାଲ୍ ସମୟକୁ ସେଦିନର ଦଣ୍ଡ ଓ ଲିପ୍ତାରେ ପରିଣତ କରିବାକୁ ହେଲେ ପୂର୍ବ ଦିନ ରାତ୍ରି ୧୨ଘଣ୍ଟାଠାରୁ ଉକ୍ତ ସମୟ ପର୍ଯ୍ୟନ୍ତ ଯେତେ ଘଣ୍ଟା ହେଲା ତହିଁରୁ ସୂର୍ଯ୍ୟୋଦୟ ସମୟ ବିୟୋଗକର । ଅବଶିଷ୍ଟ ଯାହା ରହିଲା ତାହାକୁ ୨½ରେ ଗୁଣି ଦଣ୍ଡ ଓ ଲିପ୍ତାରେ ପରିଣତ କର ।

ଉଦାହରଣ—ଜନ୍ମ ସମୟ ରାତ୍ରି ଘ୯।୧୪ମିନଟ୍ ଲୋକାଲ୍ ।

ପୂର୍ବଦିନ ରାତ୍ରି ଘ୧୨ଣ୍ଟାଠାରୁ ସମୟ=ଘ୧୨+ଘ୯।୧୪ ମିନଟ୍

=ଘ୨୧।୧୪ ମିନଟ୍

ଉକ୍ତ ଦିନ ସୂର୍ଯ୍ୟୋଦୟ=ଘ୬।୩୫ ମିନଟ୍

ଘ୧୪।୩୯ ମିନଟ୍

ଘ୧୪ଣ୍ଟା=୧୪×୨½=ଦ୩୫ଣ୍ଡ

୩୯ ମିନଟ୍=୩୯×୨½=୯୭½ ଲିପ୍ତା=ଦ୧।୩୮ ଲିପ୍ତା ପ୍ରାୟ

ଘ୧୪। ୩୯ମିନଟ୍=ଦ୩୬।୩୮ ଲିପ୍ତା

**୧ମ ପ୍ରଣାଳୀରେ ଲଗ୍ନ ନିରୂପଣ**:—ପୌଷମାସ ଧନୁମାସ ହେତୁ ଧନୁ ଲଗ୍ନରେ ସୂର୍ଯ୍ୟ ଉଦିତ ହୋଇ ଅଛନ୍ତି । କଟକ ପାଇଁ ଧନୁ ଲଗ୍ନର ମାନ=ଦ୫।୩୭ଲିପ୍ତା । (ବହିର ଶେଷରେ ଦିଆ ଯାଇଥିବା ସାୟନ ଲଗ୍ନମାନ ଦେଖ ।)

ଦ୧=୬୦ଲିପ୍ତା

ଦ୫।୩୭ଲିପ୍ତା=୫×୬୦+୩୭=୩୩୭ଲିପ୍ତା ।

ଜନ୍ମ ଦିନର ରବ୍ୟଂଶ ୧୨୩।୨।୪୭=୨୩°୨ମିନଟ୍ (ପ୍ରାୟ)

୨୩°୨ ମିନଟ୍=୨୩×୬୦+୨=୧୩୮୨ମିନଟ

୩୦°=୩୦×୬୦=୧୮୦୦ମିନଟ୍

ଲଗ୍ନର ଭୁକ୍ତ କାଳ=$\frac{\text{ଲଗ୍ନର ମାନ}\times\text{ରବ୍ୟଂଶ}}{\text{୩୦°}}$

=$\frac{\text{୩୩୭ଲିପ୍ତା}\times\text{୧୩୮୨ମିନଟ୍}}{\text{୧୮୦୦ ମିନଟ୍}}$=୨୫୯ଲିପ୍ତା=ଦ୪।୧୯ ଲିପ୍ତା

∴ ଧନୁ ଲଗ୍ନର ଭୋଗ୍ୟ କାଳ=୫।୩୭−ଦ୪।୧୯=ଦ୧।୧୮ ଲିପ୍ତା ।

| | | |
|---|---|---|
| ଧନୁ ଲଗ୍ନର ଭୋଗ୍ୟକାଳ | ଦ୧।୧୮ | ଲିପ୍ତା |
| ମକର | ଦ୫।୨ | ,, |
| କୁମ୍ଭ | ଦ୪।୨୩ | ,, |
| ମୀନ | ଦ୩।୫୦ | ,, |
| ମେଷ | ଦ୩।୫୪ | ,, |
| ବୃଷ | ଦ୪।୨୩ | ,, |
| ମିଥୁନ | ଦ୫।୨ | ,, |
| କର୍କଟ | ଦ୫।୩୨ | ,, |
| | ଦ୩୩।୪୩ | ଲିପ୍ତା |
| ସିଂହ | ଦ୫।୩୫ | ,, |
| | ଦ୩୯।୧୮ | ଲିପ୍ତା |

ଜନ୍ମ ସମୟ ଅର୍ଥାତ୍ ଦ ୩୭ । ୩୮ ଲିପ୍ତା ଦ ୩୪ । ୪୩ ଲିପ୍ତା ଓ ଦ ୩୯ । ୧୮ ଲିପ୍ତା ମଧ୍ୟରେ ପଡ଼ିବାରୁ ଜନ୍ମ ଲଗ୍ନ ସିଂହ ଅଟେ ।

ସିଂହଲଗ୍ନର ଭୁକ୍ତ କାଳ = ଦ ୩୭।୩୮ − ଦ ୩୪।୪୩

= ଦ ୨ । ୫୫ ଲିପ୍ତା

ଦ ୨ । ୫୫ ଲିପ୍ତା = ୬୦ × ୨ + ୫୫ = ୧୭୫ ଲିପ୍ତା ।

ସିଂହଲଗ୍ନ ଦ ୫ । ୩୦ ଲିପ୍ତା = ୫ × ୬୦ + ୩୦ = ୩୩୦ ଲିପ୍ତା

$$\text{ଲଗ୍ନସ୍ଫୁଟ} = \frac{\text{ଲଗ୍ନର ଭୁକ୍ତକାଳ} \times ୩୦^\circ}{\text{ଲଗ୍ନର କାଳ}} = \frac{\text{୧୭୫ ଲିପ୍ତା} \times ୩୦^\circ}{\text{୩୩୦ ଲିପ୍ତା}}$$

= ୧୫°୪୦ ମିନଟ୍ ସିଂହ

ନିରୟଣ ଓ ସାୟନ ସ୍ଫୁଟ ;—

ପାଞ୍ଜିରେ ଦିଆଯାଇଥିବା ଗ୍ରହମାନଙ୍କର ସ୍ଫୁଟ ନିରୟଣ ସ୍ଫୁଟ ଅଟେ । ସାୟନ ଲଗ୍ନମାନଙ୍କର କାଳ ଏ ପୁସ୍ତକର ଶେଷରେ ଦିଆଯାଇଥିବାରୁ ସୂର୍ଯ୍ୟୋଦୟ ସମୟରେ ଲଗ୍ନ ନିରୂପଣ ପାଇଁ ରବିଙ୍କର ସାୟନ ସ୍ଫୁଟ ନିର୍ଣ୍ଣୟ କରିବା ଦରକାର । ଗ୍ରହମାନଙ୍କର ନିରୟଣ ସ୍ଫୁଟରେ ଅୟନାଂଶ ଯୋଗକଲେ ସାୟନ ସ୍ଫୁଟ ବାହାରେ । ଯଥା :—ତା ୨୭ରିଖ ଜାନୁୟାରୀ ସୂର୍ଯ୍ୟୋଦୟ ସମୟରେ ରବିଙ୍କର ସ୍ଫୁଟ ୨୬୩°୭'୪୬"

ଉକ୍ତ ବର୍ଷପାଇଁ ଅୟନାଂଶ ୨୩°୧୩'୫୨"

୨୮୬°୨୦'୩୮"

(ଅୟନାଂଶ ପାଇଁ ପାଞ୍ଜିର ୨ୟ ପୃଷ୍ଠାର ୮ମ ଧାଡ଼ି ଦେଖ)

∴ ଉକ୍ତ ଦିନର ସୂର୍ଯ୍ୟୋଦୟ ସମୟରେ ରବିଙ୍କର ସାୟନ ସ୍ଫୁଟ = ୨୮୬°୨୦'୩୮" = ରା ୯।୧୬।୨୦।୩୮ = ରା ୯।୧୬।୨୧ (ପ୍ରାୟ) ମକରରାଶି

୨ୟ ପ୍ରଣାଳୀ—ସୂର୍ଯ୍ୟଙ୍କର ସାୟନ ସ୍ଫୁଟରୁ ସାୟନ ଲଗ୍ନ ଜଣାଯାଏ । ସାୟନ ରବ୍ୟଂଶକୁ ଉକ୍ତ ଲଗ୍ନର ମାନ ଦ୍ୱାରା ଗୁଣନ କରି ୩୦° ଦ୍ୱାରା ଭାଗକର । ଭାଗଫଳ ସେହି ଲଗ୍ନର ଭୁକ୍ତକାଳ ଅଟେ । ସେହି ଲଗ୍ନର ମାନରୁ ଭୁକ୍ତକାଳ ବିୟୋଗ କରି ଭୋଗ୍ୟକାଳ ନିର୍ଣ୍ଣୟ କର । ଏହି ଭୋଗ୍ୟକାଳ ସହିତ ଜନ୍ମ ସମୟ ପର୍ଯ୍ୟନ୍ତ ପରବର୍ତ୍ତୀ ଲଗମାନଙ୍କର ମାନ ଯୋଗ କର । ଯେଉଁ ଲଗ୍ନର କାଳ ମଧ୍ୟରେ ଜନ୍ମ ସମୟ ପଡ଼େ, ସେହି ଲଗ୍ନ ଜନ୍ମ ସମୟର ସାୟନ ଲଗ୍ନ ଅଟେ । ଉକ୍ତ ଲଗ୍ନର ଭୁକ୍ତ କାଳକୁ ୩୦° ଦ୍ୱାରା ଗୁଣି ସେହି ଲଗ୍ନର ମାନ ଦ୍ୱାରା ଭାଗକଲେ ଭାଗଫଳ ସେହି ଲଗ୍ନର ସାୟନ ସ୍ଫୁଟ ଅଟେ । ଉକ୍ତ ଲଗ୍ନସ୍ଫୁଟରୁ ସେହିବର୍ଷର ଅୟନାଂଶ ବିୟୋଗ କଲେ ନିରୟଣ ସ୍ଫୁଟ ନିର୍ଣ୍ଣୀତ ହୁଏ ।

ଉଦାହରଣ—ଉକ୍ତଦିନ ରବିଙ୍କର ସାୟନ ସ୍ଫୁଟ=ରା୯।୧୭।୨୧ ସୂର୍ଯ୍ୟ ୯ରାଶି ଅତିକ୍ରମ କରିଥିବାରୁ ୧୦ମ ରାଶି ଅର୍ଥାତ୍ ମକର ରାଶିରେ ଅଛନ୍ତି । ତେଣୁ ସୂର୍ଯ୍ୟୋଦୟ ସମୟରେ ସାୟନ ଲଗ୍ନ ମକର ଅଟେ । ରବ୍ୟଂଶ ୧୭° ୨୧′=୧୭×୬୦+୨୧=୧୦୨୦+୨୧=୧୦୪୧ ମିନଟ ।

ମକର ଲଗ୍ନର ମାନ ଦଣ୍ଡ।୨ଲିପ୍ତା=୫×୬୦+୨=୩୦୨ଲିପ୍ତା । ୩୦°=୩୦×୬୦=୧୮୦୦ମିନଟ ।

∴ସୂର୍ଯ୍ୟୋଦୟ ସମୟରେ ମକର ଲଗ୍ନର ଭୁକ୍ତକାଳ=

$$\frac{\text{ରବ୍ୟଂଶ} \times \text{ମକର ଲଗ୍ନର ମାନ}}{୩୦°} = \frac{\text{୧୦୪୧ମିନଟ} \times \text{୩୦୨ଲିପ୍ତା}}{\text{୧୮୦୦ମିନଟ}}$$

=୧୭୨ଲିପ୍ତା=ଦ୨।୫୨ ଲିପ୍ତା ।

ମକର ଲଗ୍ନର ଭୋଗ୍ୟକାଳ=ଘ୫।୭ – ଘ୨।୪୭=ଘ୨।୨୦ ଲିପ୍ତା

| | | |
|---|---|---|
| କୁମ୍ଭ | =ଘ୪।୨୩ | ,, |
| ମୀନ | =ଘ୩।୫୪ | ,, |
| ମେଷ | =ଘ୩।୫୪ | ,, |
| ବୃଷ | =ଘ୪।୨୩ | ,, |
| ମିଥୁନ | =ଘ୫।୭ | ,, |
| କର୍କଟ | =ଘ୫।୩୭ | ,, |
| ସିଂହ | =ଘ୫।୩୫ | ,, |
| | ଘ୩୫।୧୩ | ,, |
| କନ୍ୟା | ଘ ୫।୨୪ | ,, |
| | ଘ୪୦।୩୭ | ,, |

ଜନ୍ମ ସମୟ ଘ୩୫।୧୩ ଲିପ୍ତା ଓ ଘ୪୦।୩୭ ଲିପ୍ତା ମଧ୍ୟରେ ପଡୁଥିବାରୁ ଜନ୍ମ ସମୟରେ ସାୟନ ଲଗ୍ନ କନ୍ୟା ଅଟେ । କନ୍ୟା-ଲଗ୍ନର ଭୁକ୍ତ କାଳ=ଘ୩୬।୩୮ – ଘ୩୫।୧୩=ଘ୧।୨୫ଲିପ୍ତା ।

ଘ୧।୨୫ ଲିପ୍ତା=୧ × ୬୦ + ୨୫=୮୫ଲିପ୍ତା ।

କନ୍ୟାଲଗ୍ନର ମାନ=ଘ୫।୨୪ଲିପ୍ତା=୫ × ୬୦ + ୨୪=୩୨୪ଲିପ୍ତା

ଲଗ୍ନସ୍ଫୁଟ = $\frac{\text{ଲଗ୍ନର ଭୁକ୍ତ କାଳ} \times ୩୦^\circ}{\text{ଲଗ୍ନର ମାନ}} = \frac{\text{୮୫ଲିପ୍ତା} \times ୩୦^\circ}{\text{୩୨୪ଲିପ୍ତା}}$

$= \frac{୨୫୫୦}{୩୨୪}$ (ଡିଗ୍ରୀ)=୭°୫୨′ କନ୍ୟା=ରା ୫।୭।୫୨=୧୫୭°୫୨′ ।

ଉପରୋକ୍ତ ଲଗ୍ନସ୍ଫୁଟ ସାୟନ ଅଟେ ମାତ୍ର ଆମ୍ଭର କୋଷ୍ଠିରେ ନିରୟଣ ଲଗ୍ନ ସ୍ଫୁଟ ଦରକାର ।

ସାୟନ ସ୍ଫୁଟ – ଅୟନାଂଶ=ନିରୟଣ ସ୍ଫୁଟ ।

∴ ନିରୟଣ ଲଗ୍ନସ୍ଫୁଟ=୧୫୭°୫୨′ − ୨୩°୧୪′ (ଅୟନାଂଶ)
=୧୩୪°୩୮′=୪।୧୪।୩୮=୧୪°୩୮′ ସିଂହ ।

ଜନ୍ମ ସମୟରେ ରାଶିଚକ୍ରରେ ଗ୍ରହମାନଙ୍କର ଓ ଲଗ୍ନର ସ୍ଥାନ ନିମ୍ନରେ ଦିଆଗଲା ।




ଚନ୍ଦ୍ର ୭ ରାଶି ଓ ୧୪ ନକ୍ଷତ୍ରରେ ଥିବାରୁ $\frac{୧୪}{୭}$ ଚକ୍ରର କେନ୍ଦ୍ର ସ୍ଥାନରେ ଦିଆଗଲା ।

# ୪ର୍ଥ ପରିଚ୍ଛେଦ

## (ଭାବ ପ୍ରକରଣ)

ପୂର୍ବରୁ କୁହା ଯାଇଅଛି ଯେ ପୃଥିବୀର ଯେ କୌଣସି ସ୍ଥାନରେ ପୂର୍ବ ଦିଗ୍‌ବଳୟର ସମ୍ମୁଖୀନ ରାଶିକୁ ସେ ସ୍ଥାନର ଲଗ୍ନ ବୋଲାଯାଏ । ପୂର୍ବ ଦିଗ୍‌ବଳୟରେ ସୂର୍ଯ୍ୟ ଉଦିତ ହେଉଥିବାରୁ ଏହି ଲଗ୍ନକୁ ଉଦୟ ଲଗ୍ନ ବୋଲାଯାଏ । ଲଗ୍ନର ଠିକ୍ ବିପରୀତ ଅର୍ଥାତ୍ ପଶ୍ଚିମ ଦିଗ୍‌ବଳୟସ୍ଥ ରାଶିକୁ ଅସ୍ତଲଗ୍ନ ବୋଲାଯାଏ । ଆକାଶର ସର୍ବୋଚ୍ଚ ବିନ୍ଦୁକୁ (zenith) ମଧ୍ୟାକାଶ ବା ଦଶମ ଲଗ୍ନ ବୋଲାଯାଏ । ଭୂତଳର ଶୀର୍ଷ ବିନ୍ଦୁକୁ (Nadir) ପାତାଳ ବା ଚତୁର୍ଥ ଲଗ୍ନ ବୋଲ ଯାଏ । ତେଣୁ ଜାତକର ଜନ୍ମ ସମୟରେ ମସ୍ତକ ଉପରିସ୍ଥ ବିନ୍ଦୁ ୧୦ମ ଭାବ ଏବଂ ପଦର ନିମ୍ନସ୍ଥ ବିନ୍ଦୁ ୪ର୍ଥ ଭାବ ଅଟେ ।




ଲଗ୍ନଠାରୁ ୧ମ ୬ରାଶିକୁ ନିଶାମାନ ଏବଂ ଲଗ୍ନର ୭ମ ରାଶି ଠାରୁ ୧୨ଶ ରାଶି ପର୍ଯ୍ୟନ୍ତ ୬ଯୁ ୬ରାଶିକୁ ଦିନମାନ ବୋଲାଯାଏ । ନିମ୍ନଲିଖିତ

ଚିତ୍ରରୁ ପାଠକମାନେ ଏହି ସମସ୍ତ ବିଷୟ ସହଜରେ ଅବଗତ ହେବ ।




ମନେକର ପୃଥିବୀର କ ବିନ୍ଦୁରେ ସୂର୍ଯ୍ୟ ଉଦିତ ହେଲେ ଏବଂ ପୂର୍ବ ଦିଗ୍‌ବଳୟ ମେଷ ରାଶିର ସମ୍ମୁଖୀନ ହେଲା । ତାହାହେଲେ ମେଷ ରାଶିକୁ ଉଦୟ ଲଗ୍ନ ବୋଲାଯିବ । ଆକାଶର ସର୍ବୋଚ୍ଚ ବିନ୍ଦୁ ବା ମଧ୍ୟାକାଶ (Zenith) ମକର ରାଶିରେ ପଡୁଥିବାରୁ ମକରରାଶିକୁ ୧୦ମ ଲଗ୍ନ ବୋଲାଯିବ । ପଶ୍ଚିମ ଦିଗ୍‌ବଳୟ ତୁଳାରାଶିରେ ପଡୁଥିବାରୁ ତୁଳାରାଶିକୁ ଅସ୍ତଲଗ୍ନ ବୋଲାଯିବ । ବିତଳର ଶିର୍ଷବିନ୍ଦୁ ବା ପାତାଳ (Nadir) କର୍କଟ ରାଶିରେ ପଡୁଥିବାରୁ କର୍କଟ ରାଶିକୁ ୪ର୍ଥ ଲଗ୍ନ ବୋଲାଯିବ ।

ପାଠକଙ୍କୁ ଅବଗତ ଅଛି ଯେ ପୃଥିବୀ ନିଜର ମେରୁଦଣ୍ଡର ଚତୁଃପାର୍ଶ୍ୱରେ ଏକ ଦିନରେ ଥରେ ବୁଲେ । ମନେକର କିଛି ସମୟ ପରେ କ ସ୍ଥାନ ଖ ସ୍ଥାନକୁ ଗତି କରିଛି ଏବଂ ଉକ୍ତ ସ୍ଥାନରେ ପୂର୍ବ ଦିଗ୍‌ବଳୟ ବୃଷରାଶିର ସମ୍ମୁଖୀନ ହୋଇଛି, ବର୍ତ୍ତମାନ ମେଷ ଦିଗ୍‌ବଳୟର ଉପରକୁ ଉଠିଯାଇ ଦ୍ୱାଦଶ ଭାବରେ ପରିଣତ ହୋଇଛି ।

୯ମ ଲଗ୍ନ ମକର ରାଶିରୁ କୁମ୍ଭରାଶିକୁ ଗତି କରୁଛି । ଅସ୍ତଲଗ୍ନ ତୁଳା ରାଶିରୁ ବିଛା ରାଶିକୁ ଗତି କରୁଛି । ଏବଂ ୪ର୍ଥ ଲଗ୍ନ କର୍କଟ ରାଶିରୁ ସିଂହ ରାଶିକୁ ଗତି କରୁଛି । ଏହି କ୍ରମରେ ଦିନ ତମାମ ଲଗ୍ନ ଓ ଅନ୍ୟାନ୍ୟ ଭାବର ପରିବର୍ତ୍ତନ ହେଉଥାଏ ।

୧୦ମ ଭାବ ସ୍ଫୁଟ ସାଧନ ପ୍ରଣାଳୀ:—ସ୍ଥୂଳ ଭାବରେ ଦେଖିଲେ ଲଗ୍ନ ସ୍ଫୁଟଠାରୁ ଦଶମ ଭାବସ୍ଫୁଟ ୯୦ଡିଗ୍ରୀ (ଅଂଶ)ଦୂରରେ ଅବସ୍ଥିତ । ମାତ୍ର ସୂକ୍ଷ୍ମ ଭାବରେ ଦେଖିବାକୁ ଗଲେ ରାଶିଚକ୍ର ବୃତ୍ତା କାରାକାର ଏବଂ ସମସ୍ତ ରାଶିର ମାନ ଅସମାନ ହୋଇଥିବାରୁ ଏବଂ ଅୟନାଂଶାଦି ହେତୁ ୧୦ମ ଭାବସ୍ଫୁଟ ଲଗ୍ନସ୍ଫୁଟଠାରୁ ଠିକ୍ ୯୦ ଡିଗ୍ରୀ(ଅଂଶ) ଦୂରରେ ନ ରହି, କେତେକ ଡିଗ୍ରୀ ଇତସ୍ତତଃ ହୁଏ । ସୂକ୍ଷ୍ମଭାବରେ ୧୦ମ ଭାବସ୍ଫୁଟ ସାଧନର ପ୍ରଣାଳୀ ନିମ୍ନରେ ଦିଆଗଲା ।

୧ । ତାତ୍କାଳୀକ ରବିକୁ ସାୟନ ରବିରେ ପରିଣତ କରି କର୍କଟ ରେଖାର ରାଶିମାନ (ଲିପ୍ତା)ରେ ପରିଣତ କର ।

୨ । (କ) ଦିବସ ଜନ୍ମ ହୋଇଥିଲେ, ଜନ୍ମ ସମୟ ଦିନାର୍ଦ୍ଧର କେତେ ସମୟ ପୂର୍ବେ ବା ପରେ ନିରୂପଣ କର ।

(ଖ) ରାତ୍ରରେ ଜନ୍ମ ହୋଇଥିଲେ, ଜନ୍ମ ସମୟ ନିଶାର୍ଦ୍ଧର କେତେ ସମୟ ପୂର୍ବେ ବା ପରେ ନିରୂପଣ କର ।

୩ । (କ) ଦିବସରେ ଦିନାର୍ଦ୍ଧର ଯେତେ ସମୟ ପୂର୍ବରେ ଜନ୍ମ ହୋଇଥିବ; ଉକ୍ତ ସମୟକୁ ଲିପ୍ତାରେ ପରିଣତ କରି ୧ମ ନିୟମ ଅନୁସାରେ ପ୍ରାପ୍ତ ଲିପ୍ତାରୁ ବିୟୋଗ କରି କର୍କଟରେଖାର ରାଶିମାନ ଅନୁସାରେ ସ୍ଫୁଟ ନିର୍ଣ୍ଣୟ କର । ଉକ୍ତ ସ୍ଫୁଟରୁ ଅୟନାଂଶ ବାଦ୍‌ଦେଲେ ନିରୟଣ ୧୦ମ ଭାବସ୍ଫୁଟ ନିର୍ଣ୍ଣିତ ହୁଏ ।

ଦିବସରେ ଦିନାର୍ଦ୍ଧର ଯେତେ ସମୟ ପରେ ଜନ୍ମ ହୋଇଥିବ ଉକ୍ତ ସମୟକୁ ଲିପ୍ତାରେ ପରିଣତ କରି ୧ମ ନିୟମ ଅନୁସାରେ ପ୍ରାପ୍ତ

ଲିପ୍ତାରେ ଯୋଗ କରି ବିଷୁବରେଖାର ରାଶିମାନ ଅନୁସାରେ ସ୍ଫୁଟ ନିର୍ଣ୍ଣୟ କର । ଉକ୍ତ ସ୍ଫୁଟରୁ ଅୟନାଂଶ ବାଦ୍‌ଦେଲେ ନିରୟଣ ୧୦ମ ଭାବସ୍ଫୁଟ ନିଶ୍ଚିତ ହୁଏ ।

(ଖ) ସ୍ଥାନରେ ନିଶାର୍ଦ୍ଧର ଯେତେ ସମୟ ପୂର୍ବରେ ଜନ୍ମ ହୋଇଥିବ ଉକ୍ତ ସମୟକୁ ଲିପ୍ତାରେ ପରିଣତ କରି ୧ମ ନିୟମ ଅନୁସାରେ ପ୍ରାପ୍ତ ଲିପ୍ତାରୁ ବିଯୋଗ କରି ବିଷୁବରେଖାର ରାଶିମାନ ଅନୁସାରେ ସ୍ଫୁଟ ନିର୍ଣ୍ଣୟ କର । ଉକ୍ତ ସ୍ଫୁଟରୁ ଅୟନାଂଶ ବାଦ ଦେଲେ ନିରୟଣ ୪ର୍ଥ ଭାବସ୍ଫୁଟ ନିଶ୍ଚିତ ହୁଏ । ଉକ୍ତ ୪ର୍ଥ ଭାବସ୍ଫୁଟରେ ୧୮୦ ଡିଗ୍ରୀ (ଅଂଶ) ବା ୬ ରାଶି ଯୋଗ କଲେ ନିରୟଣ ୧୦ମ ଭାବସ୍ଫୁଟ ନିଶ୍ଚିତ ହୁଏ ।

ସ୍ଥାନରେ ନିଶାର୍ଦ୍ଧର ଯେତେ ସମୟ ପରେ ଜନ୍ମ ହୋଇଥିବ ଉକ୍ତ ସମୟକୁ ଲିପ୍ତାରେ ପରିଣତ କରି ୧ମ ନିୟମ ଅନୁସାରେ ପ୍ରାପ୍ତ ଲିପ୍ତାରେ ଯୋଗ କରି ବିଷୁବରେଖାର ରାଶିମାନ ଅନୁସାରେ ସ୍ଫୁଟ ନିର୍ଣ୍ଣୟ କର । ଉକ୍ତ ସ୍ଫୁଟରୁ ଅୟନାଂଶ ବାଦଦେଲେ ନିରୟଣ ୪ର୍ଥ ଭାବସ୍ଫୁଟ ନିଶ୍ଚିତ ହୁଏ । ଉକ୍ତ ୪ର୍ଥ ଭାବସ୍ଫୁଟରେ ୧୮୦ ଡିଗ୍ରୀ (ଅଂଶ) ବା ୬ ରାଶି ଯୋଗ କଲେ ନିରୟଣ ୧୦ମ ଭାବସ୍ଫୁଟ ନିଶ୍ଚିତ ହୁଏ ।

ପାଠକଙ୍କର ସୁବିଧା ନିମନ୍ତେ ବିଷୁବରେଖାର ରାଶିମାନ ଲିପ୍ତାରେ ପରିଣତ କରାଯାଇ ନିମ୍ନଲିଖିତ ତାଲିକାରେ ଦିଆଗଲା ।

| ସଂଖ୍ୟା | ରାଶି | ବିଷୁବରେଖାର ରାଶିମାନ | ସମଷ୍ଟି |
|---|---|---|---|
| ୧ | ମେଷ | ୨୭୮ ଲିପ୍ତା | ୨୭୮ ଲିପ୍ତା |
| ୨ | ବୃଷ | ୨୯୯ ,, | ୫୭୭ ,, |
| ୩ | ମିଥୁନ | ୩୨୩ ,, | ୯୦୦ ,, |
| ୪ | କର୍କଟ | ୩୨୩ ,, | ୧୨୨୩ ,, |
| ୫ | ସିଂହ | ୨୯୯ ,, | ୧୫୨୨ ,, |

| ସଂଖ୍ୟା | ରାଶି | କକ୍ଷବରେଖାର ରାଶିମାନ | ସମଷ୍ଟି |
|---|---|---|---|
| ୬ | କନ୍ୟା | ୨୭୮ ଲିପ୍ତା | ୧୮୦୦ ଲିପ୍ତା |
| ୭ | ତୁଳା | ୨୭୮ ,, | ୨୦୭୮ ,, |
| ୮ | ବୃଶ୍ଚ | ୨୯୯ ,, | ୨୩୭୭ ,, |
| ୯ | ଧନୁ | ୩୨୩ ,, | ୨୭୦୦ ,, |
| ୧୦ | ମକର | ୩୨୩ ,, | ୩୦୨୩ ,, |
| ୧୧ | କୁମ୍ଭ | ୨୯୯ ,, | ୩୩୨୨ ,, |
| ୧୨ | ମୀନ | ୨୭୮ ,, | ୩୬୦୦ ,, |

ଉଦାହରଣ :—ଉପରୋକ୍ତ ଜାତକର ଜନ୍ମ ସୂର୍ଯ୍ୟୋଦୟାଦ୍ଧ ବେଳ ଦ୦୭।୩୮ ଲିପ୍ତା

ଦିନମାନ=ଦିନାର୍ଦ୍ଧ ଦ୧୩।୩୩ × ୨ = ଦ୨୭।୬ ଲିପ୍ତା

∴ ସ୍ୱନ ଜାତ ଦଣ୍ଡ ଦ୯।୩୨ ଲିପ୍ତା

ନଷାର୍ଦ୍ଧ=ଦ୍ୱ ୩୦ – ଦିନାର୍ଦ୍ଧ ଦ ୧୩।୩୫=ଦ୧୬।୨୭ ଲିପ୍ତା

ଅତଏବ ଜାତକର ଜନ୍ମ ନଷାର୍ଦ୍ଧର ପୂର୍ବରୁ ହୋଇଅଛି ।

(ଜନ୍ମ ନିୟମ (ଖ)ର ପ୍ରଥମ ଗଦ୍ୟାଂଶ ଦେଖ)

ନଷାର୍ଦ୍ଧ ଦ ୧୬।୨୭ – ସ୍ୱନଜାତ ଦଣ୍ଡ ଦ ୯।୩୨=ଦ୬।୫୫ ଲିପ୍ତା=୪୧୫ ଲିପ୍ତା ।

ତାତ୍କାଳୀନ ରବିସ୍ଫୁଟ=ରା ୮।୨୩।୪୪

ଅୟନାଂଶ = ୦।୨୩।୧୪ (ପ୍ରାୟ)

ସାୟନ ରବି=ରା୯।୧୬।୫୮

ରାଶିସଂଖ୍ୟା ୯ (ଧନୁ) ପାଇଁ ଉପରୋକ୍ତ ତାଲିକା ଅନୁସାରେ କକ୍ଷବରେଖାର ରାଶିମାନର ସମଷ୍ଟି= ୨୭୦୦ ଲିପ୍ତା

ଅବଶିଷ୍ଟ ମକର ରାଶିର ୧୬°୫୮′ ପାଇଁ କକ୍ଷବରେଖାର

ରାଶିମାନ= $\frac{\text{୧୭°୫୮′} \times \text{୩୨୪ ଲିପ୍ତା (ମକର ରାଶିମାନ)}}{\text{୩୦°}}$

= ୧୮୪ ଲିପ୍ତା(ପ୍ରାୟ)

∴ ରା୯।୧୮।୫୮ପାଇଁ ବିଷୁବରେଖାର ରାଶିମାନ=୨୮୮୪ ଲିପ୍ତା

ନକ୍ଷାର୍ଦ୍ଧ ଓ କାଳଦଣ୍ଡ ମଧ୍ୟରେ ବ୍ୟବଧାନ = ୪୧୫ ଲିପ୍ତା

ଅନ୍ତରଫଳ =୨୪୬୯ ଲିପ୍ତା

ଉପରୋକ୍ତ ତାଲିକା ଅନୁସାରେ ୮ ରାଶି ପର୍ଯ୍ୟନ୍ତ

ରାଶିମାନର ସମଷ୍ଟି=୨୩୭୭ ଲିପ୍ତା

ଅନ୍ତରଫଳ = ୯୨ ଲିପ୍ତା

୯ମ (ଧନୁ) ରାଶିର ରାଶିମାନ ୩୨୩ ଲିପ୍ତା=୩୦°

∴ ୯୨ ଲିପ୍ତା= $\frac{\text{୩୦°} \times \text{୯୨}}{\text{୩୨୩}}$ =୮°୩୩′ ପ୍ରାୟ ।

∴ ସାୟନ ୪ର୍ଥ ଭାବସ୍ଫୁଟ=ରା ୮।୮।୩୩

ଅୟନାଂଶ= ୦।୨୨।୧୪

∴ ନିରୟଣ ୪ର୍ଥ ଭାବସ୍ଫୁଟ=ରା୭।୧୬।୧୯

∴ ନିରୟଣ ୧୦ମ ଭାବସ୍ଫୁଟ=ରା୭।୧୫।୧୯+ରା୬=ରା୧୩।୧୫।୧୯=ରା୧।୧୫।୧୯ *

## ଭାବସ୍ଫୁଟ ସାଧନ

ଲଗ୍ନସ୍ଫୁଟରେ ୧୮୦° ବା ୬ ରାଶି ଯୋଗକଲେ ୭ମ ଭାବସ୍ଫୁଟ ନିର୍ଣ୍ଣିତ ହୁଏ । ୧୦ମ ଭାବସ୍ଫୁଟରେ ୧୮୦° ବା ୬ ରାଶି ଯୋଗକଲେ ୪ର୍ଥ ଭାବସ୍ଫୁଟ ନିର୍ଣ୍ଣିତ ହୁଏ । ତତ୍ପରେ ଉପରୋକ୍ତ ୪ ଗୋଟି

---

* ୧୨ରାଶିରୁ ଅଧିକ ରାଶି ନ ଥିବାରୁ ରା୧୩।୧୫।୧୯ରୁ ୧୨ରାଶି ବିୟୋଗ କରାଗଲା ।

ଭାବସ୍ଫୁଟ ସାହାଯ୍ୟରେ ଅନ୍ୟ ୮ ଗୋଟି ଭାବର ସ୍ଫୁଟ ନିର୍ଣ୍ଣିତ ହୁଏ । ଯଥା— ଲଗ୍ନସ୍ଫୁଟ ଓ ୪ର୍ଥ ଭାବସ୍ଫୁଟ ମଧ୍ୟରେ ଯେତେ ରାଶି ବା ଅଂଶ ବ୍ୟବଧାନ ଅଛି ତାହାକୁ ତିନିଭାଗ କରି ୧ଭାଗ ଲଗ୍ନସ୍ଫୁଟରେ ଯୋଗକଲେ ୨ୟ ଭାବସ୍ଫୁଟ ନିର୍ଣ୍ଣିତ ହୁଏ ଏବଂ ଲଗ୍ନ ସ୍ଫୁଟରେ ଉକ୍ତ ତିନିଭାଗରୁ ୨ଭାଗ ଯୋଗକଲେ ୩ୟ ଭାବସ୍ଫୁଟ ନିର୍ଣ୍ଣିତ ହୁଏ । ସେହିପରି ୧୦ ଭାବସ୍ଫୁଟ ଓ ଲଗ୍ନସ୍ଫୁଟ ମଧ୍ୟରେ ଯେତେ ରାଶି ବା ଅଂଶ ବ୍ୟବଧାନ ଅଛି ତାହାକୁ ତିନିଭାଗ କରି ୧ମ ଭାଗ ୧୦ମ ଭାବସ୍ଫୁଟରେ ଯୋଗକଲେ ୧୧ଶ ଭାବସ୍ଫୁଟ ନିର୍ଣ୍ଣୀତ ହୁଏ ଏବଂ ୧୦ମ ଭାବସ୍ଫୁଟରେ ଉକ୍ତ ତିନିଭାଗରୁ ଦୁଇ ଭାଗ ଯୋଗ କଲେ ୧୨ଶ ଭାବସ୍ଫୁଟ ନିର୍ଣ୍ଣୀତ ହୁଏ । ୨ୟ ଭାବସ୍ଫୁଟରେ ୬ରାଶି ଯୋଗକଲେ ୮ମ ଭାବସ୍ଫୁଟ, ୩ୟ ଭାବସ୍ଫୁଟରେ ୬ରାଶି ଯୋଗକଲେ ୯ମ ଭାବସ୍ଫୁଟ, ୧୧ଶ ଭାବସ୍ଫୁଟରେ ୬ରାଶି ଯୋଗକଲେ ୫ମ ଭାବସ୍ଫୁଟ ଏବଂ ୧୨ଶ ଭାବସ୍ଫୁଟରେ ୬ରାଶି ଯୋଗକଲେ ୬ଷ୍ଠ ଭାବସ୍ଫୁଟ ନିର୍ଣ୍ଣୀତ ହୁଏ । ଉପରୋକ୍ତ ସମସ୍ତ ଭାବସ୍ଫୁଟକୁ ଭାବମଧ୍ୟ ମଧ୍ୟ ବୋଲାଯାଏ ।

ଉଦାହରଣ—ଉପରୋକ୍ତ କୋଷ୍ଠିରେ ଲଗ୍ନସ୍ଫୁଟ ରା୪।୧୪।୩୮ ଓ ୧୦ମ ଭାବସ୍ଫୁଟ ରା୧।୧୫।୧୯,

୭ମ ଭାବସ୍ଫୁଟ=ଲଗ୍ନସ୍ଫୁଟ ରା୪।୧୪।୩୮+ରା୬= ରା୧୦।୧୪।୩୮

୪ର୍ଥ ଭାବସ୍ଫୁଟ=ଦଶମ ଭାବସ୍ଫୁଟ ରା୧।୧୫।୧୯+ରା୬= ରା୭।୧୫।୧୯



ଲଗ୍ନସ୍ଫୁଟ ଓ ଦଶମ ଭବସ୍ଫୁଟ ମଧ୍ୟରେ ବ୍ୟବଧାନ
ଗ୍ର୪।୧୪।୩୮ – ଗ୍ର୧।୧୫।୧୯ = ଗ୍ର୨।୨୯।୧୯ = ୮୯°୧୯'

$\frac{୮୯°୧୯'}{୩}$ = ୨୯°୪୬' (ପ୍ରାୟ)

∴ ୧୧ଶ ଭବସ୍ଫୁଟ = ୧୦ମ ଭବସ୍ଫୁଟ ଗ୍ର୧।୧୫।୧୯ + ୨୯°୪୬' = ଗ୍ର୨।୧୫।୫

∴ ୧୨ଶ ଭବସ୍ଫୁଟ = ଗ୍ର୧।୧୫।୧୯ + ୨୯°୪୬' × ୨ = ଗ୍ର୧।୧୫।୧୯ + ୫୯°୩୨' = ଗ୍ର୩।୧୪।୫୧

ଲଗ୍ନ ସ୍ଫୁଟ ଓ ୪ର୍ଥ ଭବସ୍ଫୁଟ ମଧ୍ୟରେ ବ୍ୟବଧାନ = ଗ୍ର୭।୧୫।୧୯ – ଗ୍ର୪।୧୪।୩୮ = ଗ୍ର୩।୦।୪୧ = ୯୦°୪୧'

$\frac{୯୦°୪୧'}{୩}$ = ୩୦°୧୪' (ପ୍ରାୟ)

∴ ୨ୟ ଭବସ୍ଫୁଟ = ଗ୍ର୪।୧୪।୩୮ + ୩୦°୧୪' = ଗ୍ର୫।୧୪।୫୨

∴ ୩ୟ ଭବସ୍ଫୁଟ = ଗ୍ର୪।୧୪।୩୮ + ୩୦°୧୪' × ୨ = ଗ୍ର୬।୧୫।୬

୮ମ ଭାବସ୍ଫୁଟ=୨ୟ ଭାବସ୍ଫୁଟ ରା୫।୧୪।୫୨+ରା୬=ରା୧୧।୧୪।୫୨

୯ମ ଭାବସ୍ଫୁଟ=୩ୟ ଭାବସ୍ଫୁଟ ରା୬।୧୫।୭+ରା୬=ରା୧୨।୧୫।୭=ରା୦।୧୫।୭

୫ମ ଭାବସ୍ଫୁଟ=୧୧ଶ ଭାବସ୍ଫୁଟ ରା୨।୧୫।୫+ରା୬=ରା୮।୧୫।୫

୬ଷ୍ଠ ଭାବସ୍ଫୁଟ=୧୨ଶ ଭାବସ୍ଫୁଟ ରା୩।୧୪।୫୧+ରା୬=ରା୯।୧୪।୫୧

ଉପରୋକ୍ତ ଦ୍ୱାଦଶ ଭାବସ୍ଫୁଟ ନିମ୍ନରେ କ୍ରମ ଅନୁଯାୟୀ ଦିଆଗଲା ।

| ଭାବ | ଭାବସ୍ଫୁଟ ବା ଭାବମଧ୍ୟ |
|---|---|
| ୧ମ ବା ତନୁ | ରା ୪।୧୪।୩୮ |
| ୨ୟ ବା ଧନ | ରା ୫।୧୪।୫୨ |
| ୩ୟ ବା ଭ୍ରାତ | ରା ୬।୧୫।୭ |
| ୪ର୍ଥ ବା ମାତୃ | ରା ୭।୧୫।୧୯ |
| ୫ମ ବା ସୁତ | ରା ୮।୧୫।୫ |
| ୬ଷ୍ଠ ବା ରିପୁ | ରା ୯।୧୪।୫୧ |
| ୭ମ ବା କଳତ୍ର | ରା୧୦।୧୪।୩୮ |
| ୮ମ ବା ନିଧନ | ରା୧୧।୧୪।୫୨ |
| ୯ମ ବା ଭାଗ୍ୟ | ରା୧୨।୧୫।୭ |
| ୧୦ମ ବା କର୍ମ | ରା ୧।୧୫।୧୯ |
| ୧୧ଶ ବା ଲାଭ | ରା ୨।୧୫।୫ |
| ୧୨ଶ ବା ବ୍ୟୟ | ରା ୩।୧୪।୫୧ |

ଭାବର ଆରମ୍ଭ ବିନ୍ଦୁକୁ ଭାବ ଆଦ୍ୟ ଓ ଶେଷ ବିନ୍ଦୁକୁ ଭାବ ଅନ୍ତ୍ୟ ବୋଲଯାଏ। କୌଣସି ଭାବର ଆଦ୍ୟ ନିର୍ଣ୍ଣୟ କରିବାକୁ ହେଲେ

ଉକ୍ତ ଭାବସ୍ଫୁଟ ଓ ପୂର୍ବ ଭାବସ୍ଫୁଟ ମଧ୍ୟରେ ବ୍ୟବଧାନକୁ ଅର୍ଦ୍ଧେକ ଉକ୍ତ ଭାବସ୍ଫୁଟରୁ ବିୟୋଗ କର । ଅନ୍ତର ଫଳ ଉକ୍ତ ଭାବର ଆଦ୍ୟ ଅଟେ । କୌଣସି ଭାବର ଅନ୍ତ୍ୟ ନିର୍ଣ୍ଣୟ କରିବାକୁ ହେଲେ ଉକ୍ତ ଭାବସ୍ଫୁଟ ଓ ପରବର୍ତ୍ତୀ ଭାବସ୍ଫୁଟର ବ୍ୟବଧାନକୁ ଅର୍ଦ୍ଧେକ ଉକ୍ତ ଭାବସ୍ଫୁଟରେ ଯୋଗକର । ଯୋଗଫଳ ଉକ୍ତ ଭାବର ଅନ୍ତ୍ୟ ଅଟେ ।

ଉଦାହରଣ—

୧ମ ଭାବସ୍ଫୁଟ ରା ୪।୧୪।୩୮
୧୨ଶ ଭାବସ୍ଫୁଟ ରା ୩।୧୪।୫୧
ଅନ୍ତର ଫଳ ରା ୦।୨୯।୪୭

$$\frac{୨୯°୪୭'}{୨} = ୧୪°୫୪' \text{ (ପ୍ରାୟ)}$$

ରା୪।୧୪।୩୮ − ୧୪°୫୪' = ରା୩।୨୯।୪୪ ପ୍ରଥମଭାବ ଆଦ୍ୟ ।

୨ୟ ଭାବସ୍ଫୁଟ ରା୫।୧୪।୫୨
୧ମ ଭାବସ୍ଫୁଟ ରା୪।୧୪।୩୮
ରା୧।୦।୧୪ = ୩୦°୧୪'

$$\frac{୩୦°୧୪'}{୨} = ୧୫°୭'$$

ରା୪।୧୪।୩୮ + ୧୫°୭' = ରା୪।୨୯।୪୫ ୧ମ ଭାବ ଅନ୍ତ୍ୟ ।

ସେହିପରି ଅନ୍ୟାନ୍ୟ ଭାବମାନଙ୍କର ଆଦ୍ୟ ଓ ଅନ୍ତ୍ୟ ନିର୍ଣ୍ଣୀତ ହୋଇ ନିମ୍ନ ତାଲିକାରେ ଦିଆଗଲା ।

| ଭାବ | ଭାବମଧ୍ୟ | ଭାବଆଦ୍ୟ | ଭାବଅନ୍ତ୍ୟ |
|---|---|---|---|
| ୧ମ | ରା୪।୧୪।୩୮ | ରା୩।୨୯।୪୪ | ରା୪।୨୯।୪୫ |
| ୨ୟ | ରା୫।୧୪।୫୨ | ରା୪।୨୯।୪୫ | ରା୫।୨୯।୫୯ |
| ୩ୟ | ରା୬।୧୫।୬ | ରା୫।୨୯।୫୯ | ରା୭।୦।୧୩ |

| ଭାବ | ଭାବମଧ୍ୟ | ଭାବଆଦ୍ୟ | ଭାବଅନ୍ତ୍ୟ |
|---|---|---|---|
| ୪ର୍ଥ | ରା୭।୧୫।୧୯ | ରା ୭।୦।୧୩ | ରା୮।୦।୧୨ |
| ୫ମ | ରା୮।୧୫।୬ | ରା ୮।୦।୧୨ | ରା୮।୨୯।୫୭ |
| ୬ଷ୍ଠ | ରା୯।୧୪।୫୧ | ରା୮।୨୯।୫୭ | ରା୯।୨୯।୪୩ |
| ୭ମ | ରା୧୦।୧୪।୩୮ | ରା୯।୨୯।୪୩ | ରା୧୦।୨୯।୪୫ |
| ୮ମ | ରା୧୧।୧୪।୫୨ | ରା୧୦।୨୯।୪୫ | ରା୧୧।୨୯।୫୯ |
| ୯ମ | ରା ୦।୧୫।୭ | ରା୧୧।୨୯।୫୯ | ରା୧।୦।୧୩ |
| ୧୦ମ | ରା ୧।୧୫।୧୯ | ରା ୧।୦।୧୩ | ରା୨।୦।୧୨ |
| ୧୧ଶ | ରା ୨।୧୫।୬ | ରା ୨।୦।୧୨ | ରା୨।୨୯।୫୭ |
| ୧୨ଶ | ରା ୩।୧୪।୫୧ | ରା ୨।୨୯।୫୭ | ରା୩।୨୯।୪୪ |

ଭାବଚକ୍ର—ଯେଉଁ ଚକ୍ରରେ ଗ୍ରହମାନଙ୍କୁ ଯଥାଯୋଗ୍ୟ ଭାବରେ ସଜାଇ ରଖାଯାଇଥାଏ ତାହାକୁ ଭାବଚକ୍ର କହାଯାଏ । ଭାବଚକ୍ର ପାଇଁ, ଲଗ୍ନ ଯେଉଁ ରାଶିରେ ଥାଏ ସେହି ରାଶିଠାରୁ ପ୍ରଥମଭାବ ଧରାଯାଏ । ଅନେକ ଜ୍ୟୋତିର୍ବିଦ ରାଶି ଓ ଭାବ ସମାନ ବୋଲି ମନେ କରନ୍ତି ; ମାତ୍ର ସମସ୍ତ କ୍ଷେତ୍ରରେ ରାଶି ଓ ଭାବ ସମାନ ନ ଥାଏ । ଉକ୍ତ ଜାତକରେ ପ୍ରଥମ ରାଶି ସିଂହ ମାତ୍ର ସିଂହ ରାଶିର ସମସ୍ତ ଅଂଶ ପ୍ରଥମ ଭାବର ଅନ୍ତର୍ଭୁକ୍ତ ନୁହେଁ । ସିଂହ ରାଶିର ୨୯°୪୫'ଠାରୁ ୩୦° ପର୍ଯ୍ୟନ୍ତ ୨ୟ ବା ଧନ ଭାବର ଅନ୍ତର୍ଭୁକ୍ତ । ସେହିପରି ୧୨ଶ ରାଶି ଅର୍ଥାତ୍ କର୍କଟ ରାଶିର ୨୯°୪୩'ଠାରୁ ୩୦° ପର୍ଯ୍ୟନ୍ତ ତନୁ ବା ପ୍ରଥମ ଭାବର ଅନ୍ତର୍ଭୁକ୍ତ । ମନେକର ସିଂହ ରାଶିର ୨୯°୪୫'ଠାରୁ ୩୦° ମଧ୍ୟରେ ଗୋଟିଏ ଗ୍ରହ ଅଛି । ଉକ୍ତ ଗ୍ରହ ପ୍ରକୃତ ଧନ ଭାବରେ ଥିବାରୁ ଶରୀର ସମ୍ବନ୍ଧରେ ଫଳ ନ ଦେଇ ଧନ ସମ୍ବନ୍ଧରେ ଦେବ ।

ଉକ୍ତ ଜାତକରେ ରାଶିଚକ୍ରରେ ଗ୍ରହମାନେ ଯେଉଁ ଯେଉଁ ରାଶିର ଅବସ୍ଥିତ ଭାବଚକ୍ରରେ ସେହି ସେହି ଭାବର ଅବସ୍ଥାନ କରୁଥିବାରୁ

ରାଶିଚକ୍ର ଓ ଭାବଚକ୍ର ମଧ୍ୟରେ କୌଣସି ପାର୍ଥକ୍ୟ ହେବନାହିଁ । ଉକ୍ତ ଜାତକର ଭାବଚକ୍ର ନିମ୍ନରେ ଦିଆଗଲା ।



ଜାତକରେ ସମସ୍ତ ଚକ୍ର ଅପେକ୍ଷା ଭାବଚକ୍ରର ଆବଶ୍ୟକତା ଅଧିକ ସୂକ୍ଷ୍ମଭାବରେ ଦେଖାଯାଏ । ଗ୍ରହ ରାଶି ଚକ୍ରରେ ଯେଉଁ ସ୍ଥାନରେ ଥାଏ ତାହାର ଫଳ ନ ଦେଇ ଭାବଚକ୍ରରେ ଯେଉଁ ଭାବରେ ଥାଏ ତହିଁର ଫଳ ଦିଏ । ଉଦାହରଣ ସ୍ୱରୂପ ନିମ୍ନରେ ଗୋଟିଏ କୋଷ୍ଠୀ ଦିଆଗଲା ।



ରାଶିଚକ୍ର



ଭାବଚକ୍ର

ତା୨୨।୧୨।୧୯୦୪ ରବିବାର ଦିନ ୯।୪ ମିନିଟ୍ ସମୟରେ ଜନ୍ମ। ଜନ୍ମ ସମୟରୁ ଶୁକ୍ର ମହାଦଶାର ଭୋଗ୍ୟ ୨ବ୍।୩ମା।୨୨ଦିନ ଥିଲା।

ଉପରୋକ୍ତ କୋଷ୍ଠୀରେ ରବି ମହାଦଶାର ଫଳ ବିଚାର କରାଯାଉ। କେବଳ ରାଶି ଚକ୍ରରୁ ଦେଖିଲେ ରବି ୬ମାଧିପତି ଲଗ୍ନ ସ୍ଥାନରେ। ରବି ପ୍ରତି କୌଣସି ଶୁଭ କିମ୍ବା ପାପଗ୍ରହର ଦୃଷ୍ଟି ନାହିଁ। ଏପରି ଅବସ୍ଥାରେ ରବିଦଶା ଶୁଭଫଳ ଦେବାର କଥା। ମାତ୍ର ରବି ଦଶାରେ ଜାତକର ଆର୍ଥିକ ଓ ମାନସିକ ଅବସ୍ଥା ଅତି ଶୋଚନୀୟ ଥିଲା। ଏହି ରବି ଦଶାରେ ଜାତକର ପିତୃ ବିୟୋଗ ଘଟିଥିଲା। ଏହାର କାରଣ ଭାବଚକ୍ରରୁ ସ୍ପଷ୍ଟ ଜଣାଯାଏ। ଭାବ ଚକ୍ରରେ ରବି ଦ୍ୱାଦଶସ୍ଥ ହେତୁ ଏପରି ଅଶୁଭ ଫଳ ଦେଇଥିଲା।

---

# ପଞ୍ଚମ ପରିଚ୍ଛେଦ

## ନବାଂଶ

ଯେ କୌଣସି ରାଶିକୁ ୯ଭାଗ କଲେ ପ୍ରତ୍ୟେକ ଭାଗକୁ ନବାଂଶ ବୋଲାଯାଏ। ପ୍ରତ୍ୟେକ ରାଶି, ନକ୍ଷତ୍ରମାନଙ୍କର ୯ଗୋଟି ପାଦସଙ୍ଗେ ସମାନ ଥିବାରୁ ଏକପାଦ ଏକ ନବାଂଶ ସଙ୍ଗେ ସମାନ।

୧ରାଶି = ୩୦°

$$\therefore \text{୧ନବାଂଶ} = \frac{\text{୩୦°}}{\text{୯}} = \text{୩° ୨୦'}$$

କେଉଁ ନବାଂଶ କେତେ ଡିଗ୍ରୀ ଠାରୁ କେତେ ଡିଗ୍ରୀ ପର୍ଯ୍ୟନ୍ତ ବିସ୍ତୃତ ତାହା ନିମ୍ନରେ ଦିଆଗଲା।

| | | |
|---|---|---|
| ୧ମ ନବାଂଶ | ୦° ଠାରୁ | ୩° ୨୦' ପର୍ଯ୍ୟନ୍ତ |
| ୨ୟ ନବାଂଶ | ୩° ୨୦' ଠାରୁ | ୬° ୪୦' ପର୍ଯ୍ୟନ୍ତ |
| ୩ୟ ନବାଂଶ | ୬° ୪୦' ଠାରୁ | ୧୦° ପର୍ଯ୍ୟନ୍ତ |

| | | | |
|---|---|---|---|
| ୪ର୍ଥ ନବାଂଶ | ୧୦° ଠାରୁ | ୧୩°୨୦′ | ପର୍ଯ୍ୟନ୍ତ |
| ୫ମ ନବାଂଶ | ୧୩°୨୦′ ଠାରୁ | ୧୬°୪୦′ | ପର୍ଯ୍ୟନ୍ତ |
| ୬ଷ୍ଠ ନବାଂଶ | ୧୬°୪୦′ ଠାରୁ | ୨୦° | ପର୍ଯ୍ୟନ୍ତ |
| ୭ମ ନବାଂଶ | ୨୦° ଠାରୁ | ୨୩°୨୦′ | ପର୍ଯ୍ୟନ୍ତ |
| ୮ମ ନବାଂଶ | ୨୩°୨୦′ ଠାରୁ | ୨୬°୪୦′ | ପର୍ଯ୍ୟନ୍ତ |
| ୯ମ ନବାଂଶ | ୨୬°୪୦′ ଠାରୁ | ୩୦° | ପର୍ଯ୍ୟନ୍ତ । |

ଉଦାହରଣ— ଉପରୋକ୍ତ କୋଷ୍ଠୀରେ ରବିଙ୍କର ସ୍ଫୁଟ (ଧନୁ) ୨୩°୪୪′ ହେତୁ ରବି ଅଷ୍ଟମ ନବାଂଶରେ ଅବସ୍ଥିତ ।

ସେହିପରି ଚନ୍ଦ୍ର ୨ୟ ନବାଂଶ, ମଙ୍ଗଳ ୩ୟ ନବାଂଶ, ବୁଧ ୧ମ ନବାଂଶ, ବୃହସ୍ପତି ୨ୟ ନବାଂଶ, ଶୁକ୍ର ୩ୟ ନବାଂଶ, ଶନି ୪ର୍ଥ ନବାଂଶ, ରାହୁ ୮ମ ନବାଂଶ, କେତୁ ୮ମ ନବାଂଶ ଏବଂ ଲଗ୍ନ ୫ମ ନବାଂଶରେ ଅବସ୍ଥିତ ।

**ନବାଂଶ ଚକ୍ରରେ ଗ୍ରହମାନଙ୍କର ସ୍ଥାନ ନିରୂପଣ :—**

ଗ୍ରହ ଯଦି ମେଷ, ସିଂହ କିମ୍ବା ଧନୁ ରାଶିରେ ଥାଏ ତାହାହେଲେ ମେଷଠାରୁ ଗ୍ରହ ଥିବା ନବାଂଶ ପର୍ଯ୍ୟନ୍ତ ଗଣି ଯେଉଁ ରାଶି ପଡ଼ିଲା, ଗ୍ରହକୁ ସେହି ରାଶିରେ ଲେଖ ।

ଯଦି ଗ୍ରହ ବୃଷ କନ୍ୟା କିମ୍ବା ମକର ରାଶିରେ ଥାଏ ତାହାହେଲେ ମକର ରାଶିଠାରୁ ଗ୍ରହଥିବା ନବାଂଶ ପର୍ଯ୍ୟନ୍ତ ଗଣି ଯେଉଁ ରାଶି ପଡ଼ିଲା ଗ୍ରହକୁ ସେହି ରାଶିରେ ଲେଖ ।

ଯଦି ଗ୍ରହ ମିଥୁନ, ତୁଳା କିମ୍ବା କୁମ୍ଭ ରାଶିରେ ଥାଏ, ତାହାହେଲେ ତୁଳା ରାଶିଠାରୁ ଗ୍ରହଥିବା ନବାଂଶ ପର୍ଯ୍ୟନ୍ତ ଗଣି ଯେଉଁ ରାଶି ପଡ଼ିଲା ଗ୍ରହକୁ ସେହି ରାଶିରେ ଲେଖ ।

ଯଦି ଗ୍ରହ କର୍କଟ, ବିଛା କିମ୍ବା ମୀନ ରାଶିରେ ଥାଏ କର୍କଟ ରାଶିଠାରୁ ଗ୍ରହଥିବା ନବାଂଶ ପର୍ଯ୍ୟନ୍ତ ଗଣି ଯେଉଁ ରାଶି ପଡ଼ିଲା ଗ୍ରହକୁ ସେହି ରାଶିରେ ଲେଖ ।

ଉଦାହରଣ— ଉକ୍ତ ଜାତକଙ୍କର ରବି ଧନୁ ରାଶିର ୮ମ ନବାଂଶରେ ଅବସ୍ଥିତ । ଧନୁ ରାଶି ହେତୁ ଉପରୋକ୍ତ ନିୟମ ଅନୁସାରେ ମେଷଠାରୁ ଗଣ । ମେଷଠାରୁ ୮ ଗଣିଲେ ବଛରାଶି ପଡ଼ୁଛି । ତେଣୁ ନବାଂଶ ଚକ୍ରରେ ରବିଙ୍କର ସ୍ଥାନ ବଛ ରାଶିରେ ।

ମଙ୍ଗଳ ଧନୁ ରାଶିର ୩ୟ ନବାଂଶରେ ଅବସ୍ଥିତ । ମେଷଠାରୁ ୩ଗଣିଲେ ମିଥୁନ ରାଶି । ତେଣୁ ମଙ୍ଗଳଙ୍କର ସ୍ଥାନ ମିଥୁନରେ ।

ବୁଧ ଧନୁ ରାଶିର ପ୍ରଥମ ନବାଂଶରେ ଅବସ୍ଥିତ । ମେଷଠାରୁ ୧ଗଣିଲେ ମେଷ । ତେଣୁ ବୁଧଙ୍କର ସ୍ଥାନ ମେଷ ରାଶିରେ ।

ବୃହସ୍ପତି କନ୍ୟା ରାଶିର ୨ୟ ନବାଂଶରେ ଅବସ୍ଥିତ । ମକର ଠାରୁ ୨ଗଣିଲେ କୁମ୍ଭ ରାଶି । ତେଣୁ ବୃହସ୍ପତିଙ୍କର ସ୍ଥାନ କୁମ୍ଭରାଶିରେ ।

ସେହିପରି ଶୁକ୍ର କୁମ୍ଭ ରାଶିର ୩ୟ ନବାଂଶରେ ଥିବାରୁ ଶୁକ୍ରଙ୍କର ସ୍ଥାନ ଧନୁରାଶିରେ ଶନି ମିଥୁନ ରାଶିର, ୪ର୍ଥ ନବାଂଶରେ ଥିବାରୁ ଶନିଙ୍କର ସ୍ଥାନ ମକର ରାଶିରେ ଏବଂ ରାହୁ ମିଥୁନ ରାଶିର ୮ମ ନବାଂଶରେ ଥିବାରୁ ରାହୁଙ୍କର ସ୍ଥାନ ବୃଷ ରାଶିରେ ଅଟେ । ସେହିପରି କେତୁଙ୍କର ସ୍ଥାନ ବଛ ରାଶିରେ ଏବଂ ଲଗ୍ନର ସ୍ଥାନ ସିଂହ ରାଶିରେ ଅଟେ—ଉକ୍ତ ଜାତକର ନବାଂଶ ଚକ୍ର ନିମ୍ନରେ ଦିଆଗଲା ।



ନବାଂଶ ଚକ୍ରର ଆବଶ୍ୟକତା :—କୋଷ୍ଠୀ ବିଚାର ପାଇଁ ରାଶି ଚକ୍ରର ବିଚାର ସଙ୍ଗେ ନବାଂଶ ଚକ୍ରର ବିଚାର କରିବା ଆବଶ୍ୟକ । ରାଶି ଚକ୍ରରେ ଗ୍ରହମାନଙ୍କର ଫଳାଫଳ ନବାଂଶ ଚକ୍ରରେ ଗ୍ରହ-ମାନଙ୍କର ଫଳାଫଳ ଅନୁସାରେ ପରିବର୍ତ୍ତିତ ହୋଇପାରେ । ରାଶି-ଚକ୍ରରେ କୌଣସି ଗ୍ରହ ଅଶୁଭ ହୋଇ ନବାଂଶ ଚକ୍ରରେ ଶୁଭ ହୋଇଥିଲେ ସେ ଗ୍ରହର ଅଶୁଭ ଫଳ କମ୍ ମାତ୍ରାରେ ଅନୁଭୂତ ହୁଏ । ସେହିପରି ରାଶି ଚକ୍ରରେ ଶୁଭଗ୍ରହ ନବାଂଶ ଚକ୍ରରେ ଅଶୁଭ ହୋଇଥିଲେ ତାର ଶୁଭଫଳ ଦେବାର ମାତ୍ରା ହ୍ରାସ ହୁଏ । ଗ୍ରହମାନେ ଏବଂ ଲଗ୍ନ ରାଶି ଓ ନବାଂଶ ଚକ୍ରରେ ଏକ ରାଶିରେ ଥିଲେ ବର୍ଗୋ-ତ୍ତମ ହୁଅନ୍ତି । ଲଗ୍ନ ବର୍ଗୋତ୍ତମ ହେଲେ ଶୁଭଫଳ ଦିଏ । ଯେଉଁ ଗ୍ରହ ବର୍ଗୋତ୍ତମ ହୁଏ ସେହି ଗ୍ରହ ମଧ୍ୟ ଶୁଭଫଳ ଦିଏ । ଭାଇ ଓ ଭଉଣୀ ଓ ସନ୍ତାନମାନଙ୍କର ସଂଖ୍ୟା ତୃତୀୟ ଓ ପଞ୍ଚମାଧିପତି ଏବଂ ତୃତୀୟ ଓ ପଞ୍ଚମ ଭାବ ସଙ୍ଗେ ସଂପୃକ୍ତ ଗ୍ରହମାନଙ୍କ ମଧ୍ୟରୁ ସର୍ବାପେକ୍ଷା ବଳବାନ ଗ୍ରହର ନବାଂଶ ସ୍ଥାନରୁ ଜଣାଯାଏ । ଏହିପରି କୋଷ୍ଠୀ ବିଚାରରେ ନବାଂଶ ଚକ୍ର ବହୁ ପରିମାଣରେ ସାହାଯ୍ୟ କରେ । ତେଣୁ ପୂର୍ଣ୍ଣାଙ୍ଗ ଭାବରେ କୋଷ୍ଠୀ ବିଚାର କରିବାକୁ ହେଲେ ନବାଂଶ ଚକ୍ରକୁ ଅବହେଳିତ କରିଦେବା ନାହିଁ ।

---

# ଷଷ୍ଠ ପରିଚ୍ଛେଦ

## ଦଶା ପ୍ରକରଣ

ଜୀବନରେ କେଉଁ ଘଟଣା କେତେବେଳେ ଘଟିବ ତାହା ନିରୂପଣ କରିବା ପାଇଁ ଦଶା ଗଣନା କରାଯାଏ । ଜ୍ୟୋତିଷ ଶାସ୍ତ୍ରରେ ବହୁତ ପ୍ରକାର ଦଶାର ପ୍ରଚଳନ ଅଛି, ତନ୍ମଧ୍ୟରୁ ବିଂଶୋତ୍ତରୀ ଦଶା ବହୁ ସଂଖ୍ୟକ ଖ୍ୟାତନାମା ଜ୍ୟୋତିର୍ବିଦଙ୍କ ଦ୍ୱାରା ଅନୁମୋଦିତ ହୋଇଅଛି । ତେଣୁ ବିଂଶୋତ୍ତରୀ ଦଶା ପ୍ରକରଣ ନିମ୍ନରେ ଦିଆଗଲା ।

ବିଂଶୋତ୍ତରୀ ମତରେ ଗୋଟିଏ ନକ୍ଷତ୍ରରେ ଚନ୍ଦ୍ର ଥିଲେ ଗୋଟିଏ ଦଶା ଭୁକ୍ତ ହୁଏ । କେଉଁ ରାଶିର କେଉଁ ନକ୍ଷତ୍ରରେ ଚନ୍ଦ୍ର ଥିଲେ କେଉଁ ଦଶା ଭୁକ୍ତହୁଏ ତାହା ନିମ୍ନରେ ଦିଆଗଲା ।

| ରାଶି | ନକ୍ଷତ୍ର | ଦଶା |
|---|---|---|
| ମେଷ | ଅଶ୍ୱିନୀ ୪ପାଦ | କେତୁ ମହାଦଶା ୭ବର୍ଷ |
| | ଭ୍ରିଜା ୪ପାଦ | ଶୁକ୍ର ମହାଦଶା ୨୦ବର୍ଷ |
| | କୃତ୍ତିକା ୧ପାଦ | ରବି ମହାଦଶା ୬ବର୍ଷ |
| ବୃଷ | କୃତ୍ତିକା ୩ପାଦ | |
| | ରୋହିଣୀ ୪ପାଦ | ଚନ୍ଦ୍ର ମହାଦଶା ୧୦ବର୍ଷ |
| | ମୃଗଶିରା ୨ପାଦ | ମଙ୍ଗଳ ମହାଦଶା ୭ବର୍ଷ |
| ମିଥୁନ | ମୃଗଶିରା ୨ପାଦ | |
| | ଆର୍ଦ୍ରା ୪ପାଦ | ରାହୁ ମହାଦଶା ୧୮ବର୍ଷ |
| | ପୁନର୍ବସୁ ୩ପାଦ | ବୃହସ୍ପତି ମହାଦଶା ୧୬ବର୍ଷ |
| କର୍କଟ | ପୁନର୍ବସୁ ୧ପାଦ | |
| | ପୁଷ୍ୟା ୪ପାଦ | ଶନି ମହାଦଶା ୧୯ବର୍ଷ |
| | ଅଶ୍ଳେଷା ୪ପାଦ | ବୁଧ ମହାଦଶା ୧୭ବର୍ଷ |

| ରାଶି | ନକ୍ଷତ୍ର | ମହାଦଶା |
|---|---|---|
| ସିଂହ | ମଘା ୪ପାଦ | କେତୁ ମହାଦଶା ୭ବର୍ଷ |
| | ପୂ: ଫାଲ୍‌ଗୁନୀ ୪ପାଦ | ଶୁକ୍ର ମହାଦଶା ୨୦ବର୍ଷ |
| | ଉ: ଫାଲ୍‌ଗୁନୀ ୧ପାଦ | ରବି ମହାଦଶା ୬ବର୍ଷ |
| କନ୍ୟା | ଉ: ଫାଲ୍‌ଗୁନୀ ୩ପାଦ | |
| | ହସ୍ତା ୪ପାଦ | ଚନ୍ଦ୍ର ମହଦଶା ୧୦ବର୍ଷ |
| | ଚିତ୍ରା ୨ପାଦ | ମଙ୍ଗଳ ମହାଦଶା ୭ବର୍ଷ |
| ତୁଳା | ଚିତ୍ରା ୨ପାଦ | |
| | ସ୍ୱାତି ୪ପାଦ | ରାହୁ ମହଦଶା ୧୮ବର୍ଷ |
| | ବିଶାଖା ୩ପାଦ | ବୃହସ୍ପତି ମହାଦଶା ୧୬ବର୍ଷ |
| ବିଛା | ବିଶାଖା ୧ପାଦ | |
| | ଅନୁରାଧା ୪ପାଦ | ଶନି ମହାଦଶା ୧୯ବର୍ଷ |
| | ଜ୍ୟେଷ୍ଠା ୪ପାଦ | ବୁଧ ମହାଦଶା ୧୭ବର୍ଷ |
| ଧନୁ | ମୂଳା ୪ପାଦ | କେତୁ ମହାଦଶା ୭ବର୍ଷ |
| | ପୂର୍ବାଷାଢ଼ା ୪ପାଦ | ଶୁକ୍ର ମହାଦଶା ୨୦ବର୍ଷ |
| | ଉତ୍ତରାଷାଢ଼ା ୧ପାଦ | ରବି ମହାଦଶା ୬ବର୍ଷ |
| ମକର | ଉତ୍ତରାଷାଢ଼ା ୩ପାଦ | |
| | ଶ୍ରବଣା ୪ପାଦ | ଚନ୍ଦ୍ର ମହାଦଶା ୧୦ବର୍ଷ |
| | ଧନିଷ୍ଠା ୨ପାଦ | ମଙ୍ଗଳ ମହାଦଶା ୭ବର୍ଷ |
| କୁମ୍ଭ | ଧନିଷ୍ଠା ୨ପାଦ | |
| | ଶତଭିଷା ୪ପାଦ | ରାହୁ ମହାଦଶା ୧୮ବର୍ଷ |
| | ପୂର୍ବଭାଦ୍ର ୩ପାଦ | ବୃହସ୍ପତି ମହାଦଶା ୧୬ବର୍ଷ |
| ମୀନ | ପୂର୍ବଭାଦ୍ର ୧ପାଦ | |
| | ଉତ୍ତରଭାଦ୍ର ୪ପାଦ | ଶନି ମହାଦଶା ୧୯ବର୍ଷ |
| | ରେବତୀ ୪ପାଦ | ବୁଧ ମହାଦଶା ୧୭ବର୍ଷ |

**ଦଶା ନିରୂପଣ**—ଦଶା ନିରୂପଣ କରିବାର ଦୁଇଗୋଟି ପ୍ରଣାଳୀ ଅଛି । ଯଥା—(୧ମ) ଶିଶୁର ଜନ୍ମସମୟରେ ଯେଉଁ ନକ୍ଷତ୍ର ଭୋଗ ହେଉଥିବ ସେହି ନକ୍ଷତ୍ରରେ ଚନ୍ଦ୍ରଙ୍କର ଅବସ୍ଥିତି ଜନ୍ମ ସମୟ ପରେ ଯେତେ ଦଣ୍ଡ ଓ ଲିପ୍ତା ଥିବ ତାହାକୁ ନକ୍ଷତ୍ର ଅନୁସାରେ ଗ୍ରହର ଦଶାକାଳ ଦ୍ୱାରା ଗୁଣି ଉକ୍ତ ନକ୍ଷତ୍ରରେ ଚନ୍ଦ୍ରଙ୍କର ଅବସ୍ଥିତିର ସମୁଦାୟ ସମୟ ଦ୍ୱାରା ଭାଗ କର । ଭାଗଫଳରୁ ଉକ୍ତ ମହାଦଶାର ଅବଶିଷ୍ଟ କାଳ ଜଣାଯିବ ।

**ଉଦାହରଣ**—କେଉଁ ଦିନ ଚନ୍ଦ୍ର କେଉଁ ନକ୍ଷତ୍ରରେ ସୂର୍ଯ୍ୟୋଦୟଠାରୁ କେତେ ସମୟ ଭୋଗ କରନ୍ତି ତାହା ପାଞ୍ଜିରେ ଦିଆଯାଇଅଛି । ୬ତାରିଖ ଦିନ ଚନ୍ଦ୍ର ହସ୍ତା ନକ୍ଷତ୍ରରେ ସୂର୍ଯ୍ୟୋଦୟଠାରୁ ଦ୩୩।୨୩ ଲିପ୍ତା ଭୋଗ କରନ୍ତି । (୬ତାରିଖ ପାଞ୍ଜିର ନମୁନା ଦେଖ) ତେଣୁ ଦ୩୩।୨୩ ଲିପ୍ତାଠାରୁ ଚନ୍ଦ୍ର ଚିତ୍ରା ନକ୍ଷତ୍ର ଭୋଗ କରନ୍ତି । ୭ତାରିଖ ଦିନ ଚନ୍ଦ୍ର ଦ୪୧।୫୧ ଲିପ୍ତା ପର୍ଯ୍ୟନ୍ତ ଚିତ୍ରା ନକ୍ଷତ୍ର ଭୋଗ କରନ୍ତି । (୭ତାରିଖ ପାଞ୍ଜିର ନମୁନା ଦେଖ) ତେଣୁ ଚନ୍ଦ୍ର ୬ତାରିଖ ଦ୩୩।୨୩ ଲିପ୍ତାଠାରୁ ୭ତାରିଖ ଦ୪୦।୫୧ ଲିପ୍ତା ପର୍ଯ୍ୟନ୍ତ ଚିତ୍ରା ନକ୍ଷତ୍ର ଭୋଗ କରନ୍ତି । ୬ ତାରିଖ ଦ ୩୩।୨୩ ଲିପ୍ତାଠାରୁ ୭ ତାରିଖ ଦ୪୦।୫୧ ଲିପ୍ତା ପର୍ଯ୍ୟନ୍ତ ସମୟ=୬ ତାରିଖ ଦ ୩୩।୨୩ ଠାରୁ ୭ ତାରିଖ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ସମୟ+ଦ ୪୦।୫୧=ଦ ୬୦ – ଦ ୩୩।୨୩+ଦ୪୦।୫୧=ଦ ୨୬।୩୭+ଦ ୪୦।୫୧=ଦ ୬୭।୨୮ ଲିପ୍ତା=୪୦୪୮ ଲିପ୍ତା । ଜନ୍ମ ସମୟ ୭ ତାରିଖ ଦ ୩୬।୩୮ ଲିପ୍ତା ।

ଜନ୍ମ ସମୟଠାରୁ ଚିତ୍ରା ନକ୍ଷତ୍ରର ଅବଶିଷ୍ଟ ସମୟ=ଦ୪୦।୫୧ ଲିପ୍ତା – ଦ ୩୬।୩୮ ଲି=ଦ ୪।୧୩ ଲି=୨୫୩ ଲିପ୍ତା ।

ପୂର୍ବରୁ ଦିଆଯାଇଛି ଯେ ଚନ୍ଦ୍ର ଚିତ୍ରା ନକ୍ଷତ୍ରରେ ଥିଲେ ମଙ୍ଗଳ ମହାଦଶା ଭୁକ୍ତ ହୁଏ । ମଙ୍ଗଳ ମହାଦଶାର ପରିମାଣ=୭ ବର୍ଷ ।

ଜନ୍ମ ସମୟରେ ମଙ୍ଗଳ ମହାଦଶାର ଭୋଗ୍ୟ ।

$$= \frac{\text{ଚିତ୍ରା ନକ୍ଷତ୍ରର ଅବଶିଷ୍ଟ ଭାଗ} \times \text{ମଙ୍ଗଳ ମହାଦଶାର ପରିମାଣ}}{\text{ଚିତ୍ରା ନକ୍ଷତ୍ରର ସମ୍ପୂର୍ଣ୍ଣ ପରିମାଣ}}$$

$$= \frac{\text{୨୫୩ କଳା} \times \text{୭ ବର୍ଷ}}{\text{୪୦୪୮ କଳା}} = \frac{\text{୧୭୭୧}}{\text{୪୦୪୮}} \text{ ବର୍ଷ} = \text{ବ ୦।୫।୭ ଦିନ ।}$$

୨ୟ ପ୍ରଣାଳୀ:—ଚନ୍ଦ୍ରର ସ୍ପଷ୍ଟରୁ ଜନ୍ମ ନକ୍ଷତ୍ର ଏବଂ ଉକ୍ତ ନକ୍ଷତ୍ରରୁ କେତେ ଡିଗ୍ରୀ ଅତୀତ ହୋଇଛି ନିର୍ଣ୍ଣୟ କର । ଜନ୍ମ ନକ୍ଷତ୍ରରୁ କେଉଁ ଗ୍ରହର ଦଶା ତାହା ନିର୍ଣ୍ଣୟ କର ।

ଉକ୍ତ ଦଶାର ଭୋଗ୍ୟକାଳ

$$= \frac{\text{ଜନ୍ମ ନକ୍ଷତ୍ରର ଅଭୁକ୍ତ ପରିମାଣ} \times \text{ଉକ୍ତ ମହାଦଶାର ପରିମାଣ}}{\text{ଜନ୍ମ ନକ୍ଷତ୍ରର ପରିମାଣ}}$$

ପୂର୍ବରୁ କୁହାଯାଇଅଛି ଯେ ୧ ରାଶି = ୩୦°

୧ ରାଶି ୯ ନକ୍ଷତ୍ର ପାଦରେ ବିଭକ୍ତ ହୋଇଥିବାରୁ ୧ ପାଦ =

$$\frac{\text{୩୦}^\circ}{\text{୯}} = \text{୩}^\circ\text{୨୦}'$$

୧ ନକ୍ଷତ୍ର ୪ ପାଦରେ ବିଭକ୍ତ ହୋଇଥିବାରୁ ୧ ନକ୍ଷତ୍ର = ୩°୨୦′ × ୪ = ୧୩°୨୦′ । ତେଣୁ ଜନ୍ମ ନକ୍ଷତ୍ରର ପରିମାଣ ସର୍ବଦା ୧୩°୨୦′ ଅଟେ ।

**ଉଦାହରଣ:**—ଉପରୋକ୍ତ କୋଷ୍ଠୀରେ ଚନ୍ଦ୍ର ତୁଳାରାଶିରେ ୫°୪୯′ ୦। ର ଅଛନ୍ତି । ତୁଳା ରାଶିର ଆରମ୍ଭରେ ଚି । ନକ୍ଷତ୍ର ୨ ପାଦ ପର୍ଯ୍ୟନ୍ତ ବିସ୍ତୃତ ।

୧ ପାଦ = ୩°୨୦′

୨ ପାଦ = ୩°୨୦′ × ୨ = ୬°୪୦′

∴ ତୁଳା ରାଶିରେ ଚିତ୍ରା ନକ୍ଷତ୍ର ୬°୪୦′ ପର୍ଯ୍ୟନ୍ତ ବିସ୍ତୃତ ।

ଜନ୍ମ ନକ୍ଷତ୍ର ଚିତା ହୋଇଥିବାରୁ ଜନ୍ମ ସମୟରେ ମଙ୍ଗଳ ମହାଦଶା ଭୋଗ ହେଉଥିଲା ।

ଜନ୍ମନକ୍ଷତ୍ରର ଅଭୁକ୍ତ ପରିମାଣ=୬°୪୦'—୫°୪୯' (ଚନ୍ଦ୍ର-ସ୍ଫୁଟ)=୦°୫୧'

∴ ଜନ୍ମସମୟରେ ମଙ୍ଗଳ ମହାଦଶାର ଭୋଗ୍ୟକାଳ

$$= \frac{\text{ଜନ୍ମ ନକ୍ଷତ୍ରର ଅଭୁକ୍ତ ପରିମାଣ} \times \text{ମଙ୍ଗଳ ମହାଦଶାର ପରିମାଣ}}{\text{ଜନ୍ମ ନକ୍ଷତ୍ରର ପରିମାଣ}}$$

$$= \frac{\text{୫୧ ମିନିଟ} \times \text{୭ ବର୍ଷ}}{\text{୧୩°୨୦'}} = \frac{\text{୫୧ ମିନିଟ} \times \text{୭ ବର୍ଷ}}{\text{୮୦୦ ମିନିଟ}} = \frac{\text{୩୫୭}}{\text{୮୦୦}} \text{ ବର୍ଷ}$$

= ବ ୦।୫।୯ ଦିନ ।

—— ଦଶାରେ ଗ୍ରହମାନଙ୍କର କ୍ରମ ଯଥା :—

| | | |
|---|---|---|
| ୧ ରବି | ୬ ବର୍ଷ | |
| ୨ ଚନ୍ଦ୍ର | ୧୦ | ,, |
| ୩ ମଙ୍ଗଳ | ୭ | ,, |
| ୪ ରାହୁ | ୧୮ | ,, |
| ୫ ବୃହସ୍ପତି | ୧୬ | ,, |
| ୬ ଶନି | ୧୯ | ,, |
| ୭ ବୁଧ | ୧୭ | ,, |
| ୮ କେତୁ | ୭ | ,, |
| ୯ ଶୁକ୍ର | ୨୦ | ,, |
| ମୋଟ | ୧୨୦ ବର୍ଷ | |

ଉପରୋକ୍ତ କ୍ରମରେ ଗ୍ରହମାନଙ୍କର ଦଶାଭୁକ୍ତ ହୁଏ । ଉଦାହରଣସ୍ୱରୂପ ଉପରୋକ୍ତ କୋଷ୍ଠୀରେ ଯାହା ଅଙ୍କ କଷିବା ତାହାପାଇଁ ଆସୁ ଧରିଯାଏ । ଜାତକଙ୍କ ପ୍ରଥମେ ମଙ୍ଗଳ ମହାଦଶା ବ ୦।୫।୯ ଦିନ

ତତ୍ପରେ ରାହୁ ମହାଦଶା ୧୮ ବର୍ଷ, ତତ୍ପରେ ବୃହସ୍ପତି ମହାଦଶା ୧୬ ବର୍ଷ ଏବଂ ଏହି କ୍ରମରେ ଅନ୍ୟାନ୍ୟ ଗ୍ରହମାନଙ୍କର ଦଶା ଭୋଗିବ ।

**ଅନ୍ତର୍ଦ୍ଦଶା**—ପ୍ରତ୍ୟେକ ଗ୍ରହର ମହାଦଶା ମଧ୍ୟରେ ଅନ୍ୟାନ୍ୟ ଗ୍ରହମାନେ ସେମାନଙ୍କର ଅନ୍ତର୍ଦ୍ଦଶାରେ ନିଜ ନିଜର ପ୍ରଭାବ ବିସ୍ତାର କରନ୍ତି । ପ୍ରତ୍ୟେକ ଦଶାର ଆରମ୍ଭରେ ସେହି ଗ୍ରହର ଅନ୍ତର୍ଦ୍ଦଶା ଭୁକ୍ତ ହୁଏ । ତତ୍ପରେ ଅନ୍ୟାନ୍ୟ ଗ୍ରହମାନଙ୍କର ଅନ୍ତର୍ଦ୍ଦଶା କ୍ରମାନୁସାରେ ଭୁକ୍ତ ହୁଏ । ଯଥା—ରବି ମହାଦଶାର ଆରମ୍ଭରେ ରବି ଅନ୍ତର୍ଦ୍ଦଶା, ଭୁକ୍ତ ହୁଏ । ତତ୍ପରେ ଚନ୍ଦ୍ର ଅନ୍ତର୍ଦ୍ଦଶା, ତତ୍ପରେ ମଙ୍ଗଳ ଅନ୍ତର୍ଦ୍ଦଶା ଏହିପରି ଅନ୍ୟାନ୍ୟ ଗ୍ରହମାନଙ୍କର ଅନ୍ତର୍ଦ୍ଦଶା ଭୁକ୍ତ ହୋଇ ଶୁକ୍ର ଅନ୍ତର୍ଦ୍ଦଶାର ଶେଷରେ ରବି ମହାଦଶା ଶେଷ ହୁଏ ।

**ମହାଦଶାରେ ଅନ୍ତର୍ଦ୍ଦଶାର ପରିମାଣ ନିର୍ଣ୍ଣୟ**—ଯେଉଁ ଗ୍ରହର ଦଶାରେ ଯେଉଁ ଗ୍ରହର ଅନ୍ତର୍ଦ୍ଦଶାର ପରିମାଣ ନିର୍ଣ୍ଣୟ କରିବାକୁ ହେବ, ଉଭୟ ଗ୍ରହର ଦଶା କାଳକୁ ଗୁଣନ କର । ଗୁଣଫଳର ଶେଷ ଅଙ୍କକୁ ବାଦ୍ ଦେଲେ ଅନ୍ୟ ଯେଉଁ ସଂଖ୍ୟାଟି ରହେ ଅନ୍ତର୍ଦ୍ଦଶାର ପରିମାଣ ସେତିକି ମାସ ଏବଂ ଶେଷ ଅଙ୍କକୁ ୩ ଦ୍ୱାରା ଗୁଣିଲେ ଯେଉଁ ସଂଖ୍ୟା ହୁଏ ସେତିକି ଦିନ ହୁଏ ।

ଉଦାହରଣ (୧) ରବି ମହାଦଶାରେ ରବି ଅନ୍ତର୍ଦ୍ଦଶାର ପରିମାଣ କେତେ ?

ରବି ମହାଦଶା=୬ ବର୍ଷ

୬ × ୬=୩୬

ଶେଷ ଅଙ୍କ ୬ × ୩=୧୮ ଦିନ

ଅନ୍ୟ ସଂଖ୍ୟାଟି ୩=୩ ମାସ

∴ ରବି ମହାଦଶାରେ ରବି ଅନ୍ତର୍ଦ୍ଦଶା=ବ ୦।୩।୧୮

(୨) ରବି ମହାଦଶାରେ ଶନି ଅନ୍ତର୍ଦ୍ଦଶାର ପରିମାଣ କେତେ ?

ରବି ମହାଦଶା = ୬ ବର୍ଷ

ଶନି ମହାଦଶା = ୧୯ ବର୍ଷ

୧୯ × ୬ = ୧୧୪

ଶେଷ ଅଙ୍କ ୪ × ୩ = ୧୨ ଦିନ

ଅନ୍ୟ ସଂଖ୍ୟା ଟି ୧୧ = ୧୧ ମାସ।

∴ ରବି ମହାଦଶାରେ ଶନି ଅନ୍ତର୍ଦ୍ଦଶାର ପରିମାଣ =

ବ ୦।୧୧।୧୨ ଦିନ।

ପ୍ରତ୍ୟେକ ଗ୍ରହର ମହାଦଶା ୯ ଗୋଟି ଅନ୍ତର୍ଦ୍ଦଶାରେ ବିଭକ୍ତ। ମହାଦଶାମାନଙ୍କରେ ଅନ୍ତର୍ଦ୍ଦଶାମାନଙ୍କର ପରିମାଣ ନିମ୍ନରେ ଦିଆଗଲା।

ରବି ମହାଦଶା ୬ବର୍ଷ

| | ବ | ମା | ଦି |
|---|---|---|---|
| ରବିରେ ରବି ଅନ୍ତର | ୦ | ୩ | ୧୮ |
| ର. ଚନ୍ଦ୍ର ” | ୦ | ୬ | ୦ |
| ର. ମଙ୍ଗଳ ” | ୦ | ୪ | ୬ |
| ର. ରାହୁ ” | ୦ | ୧୦ | ୨୪ |
| ର. ବୃହସ୍ପତି ” | ୦ | ୯ | ୧୮ |
| ର. ଶନି ” | ୦ | ୧୧ | ୧୨ |
| ର. ବୁଧ ” | ୦ | ୧୦ | ୬ |
| ର. କେତୁ ” | ୦ | ୪ | ୬ |
| ର. ଶୁକ୍ର ” | ୧ | ୦ | ୦ |
| | ୬ ବର୍ଷ | | |

ମଙ୍ଗଳ ମହାଦଶା ୭ବର୍ଷ

| | ବ | ମା | ଦି |
|---|---|---|---|
| ମଙ୍ଗଳରେ ମଙ୍ଗଳ ଅନ୍ତର | ୦ | ୪ | ୨୭ |
| ମ. ରାହୁ ଅନ୍ତର | ୧ | ୦ | ୧୮ |
| ମ. ବୃହସ୍ପତି ” | ୦ | ୧୧ | ୬ |
| ମ. ଶନି ” | ୧ | ୧ | ୯ |
| ମ. ବୁଧ ” | ୦ | ୧୧ | ୨୭ |
| ମ. କେତୁ ” | ୦ | ୪ | ୨୭ |
| ମ. ଶୁକ୍ର ” | ୧ | ୨ | ୦ |
| ମ. ରବି ” | ୦ | ୪ | ୬ |
| ମ. ଚନ୍ଦ୍ର ” | ୦ | ୭ | ୦ |
| | ୭ ବର୍ଷ | | |

### ଚନ୍ଦ୍ର ମହାଦଶା ୧୦ ବର୍ଷ

| | | ବ-ମା-ଦି |
|---|---|---|
| ଚନ୍ଦ୍ରରେ ଚନ୍ଦ୍ର ଅନ୍ତର | | ୦।୧୦।୦ |
| ଚ. ମଙ୍ଗଳ ଅନ୍ତର | | ୦।୭।୦ |
| ଚ. ରାହୁ | ” | ୧।୬।୦ |
| ଚ. ବୃହସ୍ପତି | ” | ୧।୪।୦ |
| ଚ. ଶନି ଅନ୍ତର | | ୧।୭।୦ |
| ଚ. ବୁଧ | ” | ୧-୫-୦ |
| ଚ. କେତୁ | ” | ୦ ୭ ୦ |
| ଚ. ଶୁକ୍ର | ” | ୧ ୮ ୦ |
| ଚ. ରବି | ” | ୦ ୬ ୦ |
| | | ୧୦ ବର୍ଷ |

### ରାହୁ ମହାଦଶା ୧୮ ବର୍ଷ

| | | ବ-ମା-ଦି |
|---|---|---|
| ରାହୁରେ ରାହୁ ଅନ୍ତର | | ୨-୮-୧୨ |
| ରା. ବୃହସ୍ପତି | ” | ୨-୪-୨୪ |
| ରା. ଶନି | ” | ୨-୧୦-୬ |
| ରା. ବୁଧ | ” | ୨-୬-୧୮ |
| ରା. କେତୁ | ” | ୧-୦-୧୮ |
| ରା. ଶୁକ୍ର | ” | ୩-୦-୦ |
| ରା. ରବି | ” | ୦-୧୦-୨୪ |
| ରା. ଚନ୍ଦ୍ର | ” | ୧-୬-୦ |
| ରା. ମଙ୍ଗଳ | ” | ୧-୦-୧୮ |
| | | ୧୮ ବର୍ଷ |

### ବୃହସ୍ପତି ମହାଦଶା ୧୬ ବର୍ଷ

| | | ବ-ମା-ଦି |
|---|---|---|
| ବୃ. ରେ ବୃ. ଅନ୍ତର | | ୨ ୧ ୧୮ |
| ବୃ. ଶନି | ” | ୨-୬-୧୨ |
| ବୃ. ବୁଧ | ” | ୨ ୩ -୬ |
| ବୃ. କେତୁ | ” | ୦ ୧୧ ୬ |
| ବୃ. ଶୁକ୍ର | ” | ୨-୮-୦ |
| ବୃ. ରବି | ” | ୦-୯-୧୮ |
| ବୃ. ଚନ୍ଦ୍ର | ” | ୧-୪-୦ |
| ବୃ. ମଙ୍ଗଳ | ” | ୦-୧୧ ୬ |
| ବୃ. ରାହୁ | ” | ୨-୪-୨୪ |
| | | ୧୬ ବର୍ଷ |

### ବୁଧ ମହାଦଶା ୧୭ ବର୍ଷ

| | | ବ-ମା-ଦି |
|---|---|---|
| ବୁଧରେ ବୁଧ ଅନ୍ତର | | ୨-୪-୨୭ |
| ବୁ. କେତୁ | ” | ୦-୧୧-୨୭ |
| ବୁ. ଶୁକ୍ର | ” | ୨-୧୦-୦ |
| ବୁ. ରବି | ” | ୦-୧୦-୬ |
| ବୁ. ଚନ୍ଦ୍ର | ” | ୧-୫-୦ |
| ବୁ. ମଙ୍ଗଳ | ” | ୦-୧୧-୨୭ |
| ବୁ. ରାହୁ | ” | ୨-୬-୧୮ |
| ବୁ. ବୃହସ୍ପତି | ” | ୨-୩-୬ |
| ବୁ. ଶନି | ” | ୨-୮-୯ |
| | | ୧୭ ବର୍ଷ |

### ଶନି ମହାଦଶା ୧୯ବର୍ଷ

| | | ବ-ମା-ଦି |
|---|---|---|
| ଶନିରେ ଶନିଅନ୍ତର | | ୩-୦-୩ |
| ଶ. ବୁଧ | ,, | ୨-୮-୯ |
| ଶ. କେତୁ | ,, | ୧-୧-୯ |
| ଶ. ଶୁକ୍ର | ,, | ୩-୨-୦ |
| ଶ. ରବି | , | ୦-୧୧-୧୨ |
| ଶ. ଚନ୍ଦ୍ର | ,, | ୧-୭-୦ |
| ଶ. ମଙ୍ଗଳ | ,, | ୧-୧-୯ |
| ଶ. ରାହୁ | ,, | ୨-୧୦-୬ |
| ଶ. ବୃହସ୍ପତି | ,, | ୨-୬-୧୨ |
| | | ୧୯ବର୍ଷ |

### କେତୁ ମହାଦଶା ୭ବର୍ଷ

| | | ବ-ମା-ଦି |
|---|---|---|
| କେତୁରେକେତୁଅନ୍ତର | | ୦-୪-୨୭ |
| କେ. ଶୁକ୍ର | ,, | ୧-୨-୦ |
| କେ. ରବି | ,, | ୦-୪-୬ |
| କେ. ଚନ୍ଦ୍ର | ,, | ୦-୭-୦ |
| କେ. ମଙ୍ଗଳ | ,, | ୦-୪-୨୭ |
| କେ. ରାହୁ | ,, | ୧-୦-୧୮ |
| କେ. ବୃହସ୍ପତି | ,, | ୧-୧୧ ୬ |
| କେ. ଶନି | ,, | ୧-୧-୯ |
| କେ. ବୁଧ | , | ୦-୧୧-୨୭ |
| | | ୭ବର୍ଷ |

### ଶୁକ୍ର ମହାଦଶା ୨୦ବର୍ଷ

| | | ବ-ମା-ଦି |
|---|---|---|
| ଶୁକ୍ରରେ ଶୁକ୍ର ଅନ୍ତର | | ୩-୪-୦ |
| ଶୁ. ରବି | ,, | ୧-୦-୦ |
| ଶୁ. ଚନ୍ଦ୍ର | ,, | ୧-୮-୦ |
| ଶୁ. ମଙ୍ଗଳ | ,, | ୧-୨-୦ |
| ଶୁ. ରାହୁ | ,, | ୩-୦-୦ |
| ଶୁ. ବୃହସ୍ପତି | ,, | ୨-୮-୦ |
| ଶୁ. ଶନି | ,, | ୩-୨-୦ |
| ଶୁ. ବୁଧ | ,, | ୨-୧୦-୦ |
| ଶୁ. କେତୁ | ,, | ୧-୨-୦ |
| | | ୨୦ବର୍ଷ |

ଉପରୋକ୍ତ କୋଷ୍ଠୀରେ ମଙ୍ଗଳ ମହାଦଶା ଜନ୍ମସମୟକୁ ବ ୦।୫।୯ ଦିନ ଅଭୋଗ ଥିଲା । ମଙ୍ଗଳ ମହାଦଶାରେ ଶେଷ ଅନ୍ତର୍ଦ୍ଦଶା ଚନ୍ଦ୍ରର ବ ୦।୭।୦ ଦିନ । ତେଣୁ ଜନ୍ମ ସମୟରେ ମଙ୍ଗଳ ମହାଦଶାରେ ଚନ୍ଦ୍ର ଅନ୍ତର୍ଦ୍ଦଶା ବ ୦।୧।୨୧ ଦିନ ଭୋଗଯାଇ ବ ୦।୫।୯ ଦିନ ଅଭୋଗ ଥିଲା ।

ପ୍ରତ୍ୟନ୍ତର ଦଶା—ପ୍ରତ୍ୟେକ ଅନ୍ତର୍ଦ୍ଦଶା ୯ଗୋଟି ପ୍ରତ୍ୟନ୍ତର ଦଶାରେ ବିଭକ୍ତ । ଯେଉଁ ଗ୍ରହର ଅନ୍ତର୍ଦ୍ଦଶା, ପ୍ରଥମେ ସେହି ଗ୍ରହର ପ୍ରତ୍ୟନ୍ତର ଦଶା ଆରମ୍ଭ ହୁଏ ଏବଂ ତତ୍ପରେ କ୍ରମାନୁସାରେ ଅନ୍ୟାନ୍ୟ ଗ୍ରହମାନଙ୍କର ପ୍ରତ୍ୟନ୍ତର ଦଶା ଭୁକ୍ତ ହୁଏ । କୌଣସି ଅନ୍ତର୍ଦ୍ଦଶାରେ କୌଣସି ପ୍ରତ୍ୟନ୍ତର ଦଶାର ପରିମାଣ ନିର୍ଣ୍ଣୟ କରିବାକୁ ହେଲେ ଅନ୍ତର୍ଦ୍ଦଶାର କାଳରେ ପ୍ରତ୍ୟନ୍ତର ଦଶାର ଅଧିପତିର ଦଶାକାଳ ଗୁଣି ୧୨୦ବର୍ଷ ଦ୍ୱାରା ଭାଗ କର । ଭାଗଫଳ ସେହି ପ୍ରତ୍ୟନ୍ତର ଦଶାର କାଳ ଅଟେ ।

ଉଦାହରଣ—ବୃହସ୍ପତି ମହାଦଶାରେ ଶନି ଅନ୍ତର୍ଦ୍ଦଶାରେ ରାହୁ ପ୍ରତ୍ୟନ୍ତର ଦଶାର କାଳ ନିରୂପଣ କର ।

ପୂର୍ବରୁ କୁହାଯାଇଅଛି ଯେ ବୃହସ୍ପତି ମହାଦଶାରେ ଶନି ଅନ୍ତର୍ଦ୍ଦଶାର କାଳ ବ୨।୬।୧୨ ଦିନ ଅଟେ । ବ୨।୬।୧୨ଦିନ= ୯୧୨ ଦିନ (ଗଣନାର ସୁବିଧାପାଇଁ ୧ବର୍ଷକୁ ୩୬୦ଦିନ ଧର)

$$\text{ରାହୁ ପ୍ରତ୍ୟନ୍ତର ଦଶାର କାଳ} = \frac{\text{୯୧୨ଦିନ} \times \text{ଗ୍ରହଦଶାର କାଳ}}{\text{୧୨୦ ବର୍ଷ}}$$

$$= \frac{\text{୯୧୨ଦିନ} \times \text{୧୮ବର୍ଷ}}{\text{୧୨୦ବର୍ଷ}} = \frac{\text{୧୩୬୮}}{\text{୧୦}} \text{ ଦିନ} = \text{୧୩୭ ଦିନ ( ପ୍ରାୟ )}$$

=ବ୦।୪।୧୭ଦିନ ।

ବୃହସ୍ପତି ମହାଦଶାରେ ଶନି ଅନ୍ତର୍ଦ୍ଦଶାରେ ପ୍ରତ୍ୟନ୍ତର ଦଶାମାନଙ୍କର କ୍ରମ ଓ ପରିମାଣ ନିମ୍ନରେ ଦିଆଗଲା । ଅନ୍ୟାନ୍ୟ ଅନ୍ତର୍ଦ୍ଦଶାରେ ପ୍ରତ୍ୟନ୍ତର ଦଶାମାନଙ୍କର କ୍ରମ ଓ ପରିମାଣ ପାଠକ-ମାନେ ଉପରୋକ୍ତ ନିୟମ ଅନୁସାରେ ସହଜରେ ନିର୍ଣ୍ଣୟ କରି ପାରିବେ ।

ବୃହସ୍ପତି ମହାଦଶାରେ ଶନି ଅନ୍ତର୍ଦ୍ଦଶା ୨।୬।୧୨ଦିନ ।

| ପ୍ରତ୍ୟନ୍ତର ଦଶା | | ବର୍ଷ | ମାସ | ଦିନ |
|---|---|---|---|---|
| ବୃ: ଶ: ଶନି ପ୍ରତ୍ୟନ୍ତର | | ୦ | ୪ | ୨୪ |
| ବୁଧ | ,, | ୦ | ୪ | ୯ |
| କେତୁ | ,, | ୦ | ୧ | ୨୩ |
| ଶୁକ୍ର | ,, | ୦ | ୫ | ୨ |
| ରବି | ,, | ୦ | ୧ | ୧୬ |
| ଚନ୍ଦ୍ର | ,, | ୦ | ୨ | ୧୬ |
| ମଙ୍ଗଳ | ,, | ୦ | ୧ | ୨୩ |
| ରାହୁ | ,, | ୦ | ୪ | ୧୬ |
| ବୃହସ୍ପତି | ,, | ୦ | ୪ | ୨ |
| | ମୋଟ | ୨ | ୬ | ୧୨ |

# ସପ୍ତମ ପରିଚ୍ଛେଦ

ରାଶି ଅଧିପତି:—ପୃଥିବୀର ବିଭିନ୍ନ ରାଜ୍ୟମାନଙ୍କରେ ଯେପରି ଭିନ୍ନ ଭିନ୍ନ ରାଜାମାନେ ରାଜତ୍ୱ କରନ୍ତି ଆକାଶର ଭିନ୍ନ ଭିନ୍ନ ରାଶି-ମାନଙ୍କରେ ସେହିପରି ଭିନ୍ନ ଭିନ୍ନ ଗ୍ରହମାନେ ରାଜତ୍ୱ କରନ୍ତି । ରବି ଓ ଚନ୍ଦ୍ରଙ୍କୁ ଛାଡିଦେଲେ ପ୍ରତ୍ୟେକ ଗ୍ରହ ଦୁଇଟି ରାଶିର ଅଧିପତି ଅଟନ୍ତି । କେଉଁ ରାଶିମାନଙ୍କର କେଉଁ ଗ୍ରହମାନେ ଅଧିପତି ତାହା ନିମ୍ନରେ ଦିଆଗଲା । ଯଥା—

ମେଷ ଓ ବୃଶ୍ଚିକ ରାଶିର ଅଧିପତି—ମଙ୍ଗଳ
ବୃଷ ଓ ତୁଳା ରାଶିର ଅଧିପତି— ଶୁକ୍ର
ମିଥୁନ ଓ କନ୍ୟା ରାଶିର ଅଧିପତି—ବୁଧ
କର୍କଟ ରାଶିର ଅଧିପତି—ଚନ୍ଦ୍ର
ସିଂହ ରାଶିର ଅଧିପତି - ରବି
ଧନୁ ଓ ମୀନ ରାଶିର ଅଧିପତି--ବୃହସ୍ପତି
ମକର ଓ କୁମ୍ଭ ରାଶିର ଅଧିପତି --ଶନି



ରାଶି ଅଧିପତି ଚକ୍ର

ଯେଉଁ ଗ୍ରହ ଯେଉଁ ରାଶିର ଅଧିପତି ସେହି ରାଶିକୁ ସେହି ଗ୍ରହର ସ୍ୱଗୃହ ବୋଲିଯାଏ । ରାହୁ ଓ କେତୁ ଛାୟା ଗ୍ରହ ବୋଲି ସେମାନଙ୍କର ଗୃହ ନାହିଁ । କେତେକଙ୍କ ମତରେ ରାହୁର ସ୍ୱଗୃହ କନ୍ୟା ଓ କେତୁର ସ୍ୱଗୃହ ମୀନ ଅଟେ । ସ୍ୱଗୃହରେ ଗ୍ରହମାନେ ବଳବାନ୍ । ଗ୍ରହମାନେ ନିଜ ନିଜ ଗୃହମାନଙ୍କର ଫଳ ଦିଅନ୍ତି । ସ୍ୱଗୃହରେ ଗ୍ରହମାନେ ଶୁଭ ଫଳ ଦିଅନ୍ତି ।

ଉଚ୍ଚ ନୀଚ :—

| ଗ୍ରହ | ଉଚ୍ଚସ୍ଥାନ |
| --- | --- |
| ରବି | ମେଷ ୧୦° |
| ଚନ୍ଦ୍ର | ବୃଷ ୩° |
| ମଙ୍ଗଳ | ମକର ୨୮° |
| ବୁଧ | କନ୍ୟା ୧୫° |
| ଗୁରୁ | କର୍କଟ ୫° |
| ଶୁକ୍ର | ମୀନ ୨୭° |
| ଶନି | ତୁଳା ୨୦° |
| ରାହୁ | ମିଥୁନ ୨୦° |
| କେତୁ | ଧନୁ ୨୦° |



ଉଚ୍ଚସ୍ଥାନ

ଯେଉଁ ଗ୍ରହ ଯେଉଁ ସ୍ଥାନରେ ଉଚ୍ଚ ତାର ୧୮୦° ପରେ ଅର୍ଥାତ୍ ଠିକ୍ ବିପରୀତରେ ସେହି ଗ୍ରହ ନୀଚ । ଯଥା :—

| ଗ୍ରହ | ନୀଚସ୍ଥାନ |
| --- | --- |
| ରବି | ତୁଳା ୧୦° |
| ଚନ୍ଦ୍ର | ବୃଶ୍ଚିକ ୩° |
| ମଙ୍ଗଳ | କର୍କଟ ୨୮° |
| ବୁଧ | ମୀନ ୧୫° |
| ଗୁରୁ | ମକର ୫° |
| ଶୁକ୍ର | କନ୍ୟା ୨୭° |
| ଶନି | ମେଷ ୨୦° |
| ରାହୁ | ଧନୁ ୨୦° |
| କେତୁ | ମିଥୁନ ୨୦° |



ନୀଚସ୍ଥାନ

ଗ୍ରହମାନେ ଉଚ୍ଚସ୍ଥାନର ଯେତେ ନିକଟବର୍ତ୍ତୀ ହୁଅନ୍ତି ସେତେ ପରିମାଣରେ ବଳବାନ ଏବଂ ଶୁଭଫଳପ୍ରଦ ହୁଅନ୍ତି । ଠିକ୍ ଉଚ୍ଚ ସ୍ଥାନରେ ଗ୍ରହମାନେ ସର୍ବାପେକ୍ଷା ବଳବାନ୍ ଓ ଶୁଭଫଳପ୍ରଦ ହୁଅନ୍ତି । ସେହିପରି ଗ୍ରହମାନେ ନୀଚ ସ୍ଥାନର ଯେତେ ନିକଟବର୍ତ୍ତୀ ହୁଅନ୍ତି ସେତେ ପରିମାଣରେ ଦୁର୍ବଳ ଓ ଅଶୁଭ ଫଳପ୍ରଦ ହୁଅନ୍ତି ଏବଂ ଠିକ୍ ନୀଚ ସ୍ଥାନରେ ସର୍ବାପେକ୍ଷା ଦୁର୍ବଳ ଓ ଅଶୁଭ ଫଳପ୍ରଦ ହୁଅନ୍ତି ।

ମୂଳତ୍ରିକୋଣ—

| ଗ୍ରହ | ମୂଳତ୍ରିକୋଣ |
|---|---|
| ରବି | ସିଂହ ୦°ଠାରୁ ୨୦°ପର୍ଯ୍ୟନ୍ତ |
| ଚନ୍ଦ୍ର | ବୃଷ ୪°ଠାରୁ ୩୦°ପର୍ଯ୍ୟନ୍ତ |
| ମଙ୍ଗଳ | ମେଷ ୦°ଠାରୁ ୧୮°ପର୍ଯ୍ୟନ୍ତ |
| ବୁଧ | କନ୍ୟା ୧୦°ଠାରୁ ୨୦°ପର୍ଯ୍ୟନ୍ତ |
| ଗୁରୁ | ଧନୁ ୦°ଠାରୁ ୩୦°ପର୍ଯ୍ୟନ୍ତ |
| ଶୁକ୍ର | ତୁଳା ୦°ଠାରୁ ୧୦°ପର୍ଯ୍ୟନ୍ତ |
| ଶନି | କୁମ୍ଭ ୧୧°ଠାରୁ ୨୦°ପର୍ଯ୍ୟନ୍ତ |




ମୂଳତ୍ରିକୋଣରେ ଗ୍ରହମାନେ ଉଚ୍ଚ ପରି ଫଳ ଦିଅନ୍ତି ।

ଶତ୍ରୁ, ମିତ୍ର—ଗ୍ରହମାନଙ୍କର ମଧ୍ୟରେ ଶତ୍ରୁ ଓ ମିତ୍ର ଭାବ ଅଛି । ଏହି ଶତ୍ରୁ ଓ ମିତ୍ରଭାବ ଦୁଇ ପ୍ରକାର । ଯଥା— ନୈସର୍ଗିକ ଓ ତାତ୍କାଳିକ ।

ଯେଉଁ ଗ୍ରହମାନେ ନିଜ ନିଜର ପ୍ରକୃତି ଅନୁସାରେ ପରସ୍ପରର ଶତ୍ରୁ ଓ ମିତ୍ର ସେମାନଙ୍କୁ ନୈସର୍ଗିକ ଶତ୍ରୁ ଓ ମିତ୍ର ବୋଲିଯାଏ ।

ଯେଉଁ ଗ୍ରହମାନେ ସ୍ଥାନ ବିଶେଷରେ ପରସ୍ପରର ଶତ୍ରୁ ଓ ମିତ୍ର ହୁଅନ୍ତି ସେମାନଙ୍କୁ ତାତ୍କାଳିକ ଶତ୍ରୁ ଓ ମିତ୍ର ବୋଲିଯାଏ । ଭିନ୍ନ ଭିନ୍ନ କୋଷ୍ଠୀରେ ଏହି ଶତ୍ରୁ ଓ ମିତ୍ର ଭାବ ପରିବର୍ତ୍ତିତ ହୁଏ ।

## ନୈସର୍ଗିକ ମିତ୍ର, ସମ ଓ ଶତ୍ରୁ

| ଗ୍ରହ | ମିତ୍ର | ସମ | ଶତ୍ରୁ |
|---|---|---|---|
| ରବି | ଚନ୍ଦ୍ର, ଗୁରୁ, ମଙ୍ଗଳ | ବୁଧ | ଶୁକ୍ର, ଶନି |
| ଚନ୍ଦ୍ର | ରବି, ବୁଧ | ମଙ୍ଗଳ, ଗୁରୁ, ଶନି, ଶୁକ୍ର | |
| ମଙ୍ଗଳ | ଗୁରୁ, ଚନ୍ଦ୍ର, ରବି | ଶନି, ଶୁକ୍ର | ବୁଧ |
| ବୁଧ | ରବି, ଶୁକ୍ର | ଶନି, ଗୁରୁ, ମଙ୍ଗଳ | ଚନ୍ଦ୍ର |
| ଗୁରୁ | ରବି, ଚନ୍ଦ୍ର, ମଙ୍ଗଳ | ଶନି | ବୁଧ, ଶୁକ୍ର |
| ଶୁକ୍ର | ବୁଧ, ଶନି | ମଙ୍ଗଳ, ଗୁରୁ | ଚନ୍ଦ୍ର, ରବି |
| ଶନି | ଶୁକ୍ର, ବୁଧ | ଗୁରୁ | ମଙ୍ଗଳ, ଚନ୍ଦ୍ର, ରବି |

ତାତ୍କାଳିକ ମିତ୍ର ଓ ଶତ୍ରୁ – ଯେଉଁ ଗ୍ରହମାନେ ଯେଉଁ ଗ୍ରହଠାରୁ ୨ୟ, ୩ୟ, ୪ର୍ଥ, ୧୦ମ, ୧୧ଶ ଓ ୧୨ଶ ଗୃହମାନଙ୍କରେ ଥାଆନ୍ତି ସେମାନେ ସେହି ଗ୍ରହର ତାତ୍କାଳିକ ମିତ୍ର ହୁଅନ୍ତି । ଅନ୍ୟାନ୍ୟ ଗୃହମାନଙ୍କରେ ଯେଉଁ ଗ୍ରହମାନେ ଥାଆନ୍ତି ସେମାନେ ସେହି ଗ୍ରହର ତାତ୍କାଳିକ ଶତ୍ରୁ ହୁଅନ୍ତି । ଉଦାହରଣ ସ୍ୱରୂପ ନିମ୍ନଲିଖିତ କୋଷ୍ଠୀ ଦେଖ ।



ଉପରୋକ୍ତ କୋଷ୍ଠୀରେ ରବିଙ୍କର ୨ୟ ଓ ୩ୟ ସ୍ଥାନରେ ମଙ୍ଗଳ ବୃହସ୍ପତି ଥିବାରୁ ଏବଂ ୧୨ଶ ସ୍ଥାନରେ ଚନ୍ଦ୍ର ଓ ଶନି ଥିବାରୁ ଉପରୋକ୍ତ ୪ଗୋଟି ଗ୍ରହ ରବିଙ୍କର ତାତ୍କାଳିକ ମିତ୍ର ଏବଂ ଅନ୍ୟ ୨ଗୋଟି ଗ୍ରହ ରବିଙ୍କର ତାତ୍କାଳିକ ଶତ୍ରୁ ଅଟନ୍ତି । ଉକ୍ତ କୋଷ୍ଠୀରେ ଗ୍ରହମାନଙ୍କର ତାତ୍କାଳିକ ସମ୍ବନ୍ଧ ନିମ୍ନରେ ଦିଆଗଲା ।

| ଗ୍ରହ | ତାତ୍କାଳିକ ମିତ୍ର | ତାତ୍କାଳିକ ଶତ୍ରୁ |
|---|---|---|
| ରବି | ଗୁରୁ, ମଙ୍ଗଳ, ଚନ୍ଦ୍ର, ଶନି | ଶୁକ୍ର ବୁଧ |
| ଚନ୍ଦ୍ର | ଶୁକ୍ର, ରବି, ବୁଧ, ମଙ୍ଗଳ, ଗୁରୁ | ଶନି |
| ମଙ୍ଗଳ | ଗୁରୁ, ଚନ୍ଦ୍ର, ଶନି, ଶୁକ୍ର, ରବି, ବୁଧ | — |
| ବୁଧ | ମଙ୍ଗଳ, ଗୁରୁ, ଚନ୍ଦ୍ର, ଶନି | ଶୁକ୍ର, ରବି |
| ଗୁରୁ | ଚନ୍ଦ୍ର, ଶନି, ଶୁକ୍ର, ରବି, ବୁଧ, ମଙ୍ଗଳ | — |
| ଶୁକ୍ର | ମଙ୍ଗଳ, ଗୁରୁ, ଚନ୍ଦ୍ର, ଶନି | ରବି, ବୁଧ |
| ଶନି | ଶୁକ୍ର, ରବି, ବୁଧ ମଙ୍ଗଳ, ଗୁରୁ | ଚନ୍ଦ୍ର |

ନୈସର୍ଗିକ ଓ ତାତ୍କାଳିକ ସମ୍ବନ୍ଧର ଏକତ୍ରିକରଣ ।

ଗୋଟିଏ ଗ୍ରହର ଅନ୍ୟ ଗୋଟିଏ ଗ୍ରହ ଯଦି ନୈସର୍ଗିକ ମିତ୍ର ହୋଇ ତାତ୍କାଳିକ ମିତ୍ର ହୁଏ ତାହାହେଲେ ସେ ସେହି ଗ୍ରହର ଅଧିମିତ୍ର ହୁଏ । ସେହିପରି ନୈସର୍ଗିକ ମିତ୍ର ହୋଇ ତାତ୍କାଳିକ ଶତ୍ରୁ ହେଲେ ସମ ହୁଏ ।

ନୈସର୍ଗିକ ସମ ହୋଇ ତାତ୍କାଳିକ ଶତ୍ରୁ ହେଲେ ଶତ୍ରୁ ହୁଏ ।

ନୈସର୍ଗିକ ଶତ୍ରୁ ହୋଇ ତାତ୍କାଳିକ ଶତ୍ରୁ ହେଲେ ଅଧିଶତ୍ରୁ ହୁଏ ।

ନୈସର୍ଗିକ ଶତ୍ରୁ ହୋଇ ତାତ୍କାଳିକ ମିତ୍ର ହେଲେ ସମ ହୁଏ ।

ନୈସର୍ଗିକ ସମ ହୋଇ ତାତ୍କାଳିକ ମିତ୍ର ହେଲେ ମିତ୍ର ହୁଏ ।

ଉଦାହରଣ ସ୍ୱରୂପ ରବିଙ୍କର ବୃହସ୍ପତି ନୈସର୍ଗିକ ମିତ୍ର ଏବଂ ଉପରୋକ୍ତ କୋଷ୍ଠୀଠାଇଁ ତାତ୍କାଳିକ ମିତ୍ର ହେତୁ ଅଧିମିତ୍ର । ଚନ୍ଦ୍ର ଓ ମଙ୍ଗଳ ମଧ୍ୟ ସେହିପରି ଅଧିମିତ୍ର ।

ଶନି ନୈସର୍ଗିକ ଶତ୍ରୁ ଓ ତାତ୍କାଳିକ ମିତ୍ର ହେତୁ ସମ ।
ବୁଧ ନୈସର୍ଗିକ ସମ ଓ ତାତ୍କାଳିକ ଶତ୍ରୁ ହେତୁ ଶତ୍ରୁ ।
ଶୁକ୍ର ନୈସର୍ଗିକ ଶତ୍ରୁ ଓ ତାତ୍କାଳିକ ଶତ୍ରୁ ହେତୁ ଅଧିଶତ୍ରୁ ।

ଉପରୋକ୍ତ କୋଷ୍ଠୀରେ ଗ୍ରହମାନଙ୍କର ପରସ୍ପର ପ୍ରତି ସମ୍ବନ୍ଧ ନିମ୍ନରେ ଦିଆଗଲା ।

| ଗ୍ରହ | ଅଧିମିତ୍ର | ମିତ୍ର | ସମ | ଶତ୍ରୁ | ଅଧିଶତ୍ରୁ |
|---|---|---|---|---|---|
| ରବି | ଗୁରୁ, ଚନ୍ଦ୍ର, ମଙ୍ଗଳ | — | ଶନି | ବୁଧ | ଶୁକ୍ର |
| ଚନ୍ଦ୍ର | ରବି, ବୁଧ | ମଙ୍ଗଳ, ଗୁରୁ, ଶୁକ୍ର | — | ଶନି | — |
| ମଙ୍ଗଳ | ଗୁରୁ, ଚନ୍ଦ୍ର, ରବି | ଶନି, ଶୁକ୍ର ବୁଧ | — | — | — |
| ବୁଧ | — | ମଙ୍ଗଳ, ଶନି, ଗୁରୁ | ରବି, ଶୁକ୍ର, ଚନ୍ଦ୍ର | — | — |
| ଗୁରୁ | ଚନ୍ଦ୍ର, ରବି, ମଙ୍ଗଳ | ଶନି | ବୁଧ, ଶୁକ୍ର | — | — |
| ଶୁକ୍ର | ଶନି | ମଙ୍ଗଳ; ଗୁରୁ | ବୁଧ, ଚନ୍ଦ୍ର | — | ରବି |
| ଶନି | ଶୁକ୍ର, ବୁଧ | ଗୁରୁ | ମଙ୍ଗଳ, ରବି- | | ଚନ୍ଦ୍ର |

# ଅଷ୍ଟମ ପରିଚ୍ଛେଦ

## କୋଷ୍ଠୀ ବିଗ୍ଭର

ଗୃହ:—କୋଷ୍ଠୀରେ ପ୍ରତ୍ୟେକ ରାଶିକୁ ଗୋଟିଏ ଗୋଟିଏ ଗୃହ ବୋଲିଯାଏ । ୧୨ଗୋଟି ରାଶି ଥିବାରୁ ଗୋଟିଏ କୋଷ୍ଠୀରେ ୧୨ଗୋଟି ଗୃହ । ଲଗ୍ନକୁ ପ୍ରଥମ ଗୃହ ବୋଲି ଧରାଯାଏ ଏବଂ ସେଠାରୁ ଘଣ୍ଟାକଣ୍ଟା ଯେଉଁ ଦିଗରେ ବୁଲେ ତାର ଠିକ୍ ବିପରୀତ ଦିଗରେ ଅର୍ଥାତ୍ ଡାହାଣରୁ ବାମଆଡ଼କୁ ଗଣାଯାଏ । ତୃତୀୟ ପରିଚ୍ଛେଦରେ ଦିଆଯାଇଥିବା କୋଷ୍ଠୀରେ ବୃହସ୍ପତି ଲଗ୍ନଠାରୁ ୨ୟ ସ୍ଥାନରେ ଥିବାରୁ ୨ୟ ଗୃହରେ ଅବସ୍ଥିତ । ସେହିପରି ଚନ୍ଦ୍ର ୩ୟ, ମଙ୍ଗଳ, ବୁଧ, କେତୁ ଓ ରବି ୫ମ, ଶୁକ୍ର ୬ମ ଏବଂ ଶନି ଓ ରାହୁ ୧୧ଶ ଗୃହରେ ଅବସ୍ଥିତ ।

୧ମ, ୪ର୍ଥ, ୭ମ ଓ ୧୦ମ ସ୍ଥାନ ବା ଗୃହମାନଙ୍କୁ କେନ୍ଦ୍ର ବୋଲିଯାଏ । ୨ୟ, ୫ମ, ୮ମ ଓ ୧୧ଶ ଗୃହମାନଙ୍କୁ ପଣଫର ବୋଲିଯାଏ ଏବଂ ୩ୟ, ୬ଷ୍ଠ, ୯ମ ଓ ୧୨ଶ ଗୃହମାନଙ୍କୁ ଅପୋକ୍ଲିମ ବୋଲିଯାଏ । ୩ୟ, ୬ଷ୍ଠ, ୧୦ମ ଓ ୧୧ଶ ଗୃହମାନଙ୍କୁ ଉପଚୟ ବୋଲିଯାଏ । ୫ମ ଓ ୯ମ ଗୃହମାନଙ୍କୁ ତ୍ରିକୋଣ ବୋଲିଯାଏ ।

ଗ୍ରହ ଦୃଷ୍ଟି:—ସମସ୍ତ ଗ୍ରହ ୭ମ ସ୍ଥାନକୁ ପୂର୍ଣ୍ଣଭାବରେ ଦୃଷ୍ଟି କରନ୍ତି । ତତ୍‌ଭିନ୍ନ, ବୃହସ୍ପତି, ଶନି ଓ ମଙ୍ଗଳଙ୍କର ବିଶେଷ ଦୃଷ୍ଟି ଅଛି । ବୃହସ୍ପତି ୫ମ ଓ ୯ମ ସ୍ଥାନକୁ, ଶନି ୩ୟ ଓ ୧୦ମ ସ୍ଥାନକୁ ଏବଂ ମଙ୍ଗଳ ୪ର୍ଥ ଓ ୮ମ ସ୍ଥାନକୁ ପୂର୍ଣ୍ଣଦୃଷ୍ଟି କରନ୍ତି ।

ରାଶି ଓ ସେମାନଙ୍କର ବିଶେଷତ୍ୱ:— (୧) ମେଷ-ଚର (ଚଳନଶୀଳ ପୃଷ୍ଠୋଦୟ, ପୁରୁଷ, ଉଜ୍ଜ, ଅଗ୍ନି ଓ ପୂର୍ବଦିଗ । (୨) ବୃଷ—ସ୍ଥିର, ପୃଷ୍ଠୋଦୟ, ସ୍ତ୍ରୀ, ସୁଚ୍ଛ, ଭୂମି, ଓ ଦକ୍ଷିଣ ଦିଗ । (୩) ମିଥୁନ—

ଦ୍ୱିସ୍ୱଭାବ, ଶୀର୍ଷୋଦୟ, ପୁରୁଷ, ଓଜ, ବାୟୁ ଓ ପଶ୍ଚିମ ଦିଗ । (୪) କର୍କଟ—ଚର, ପୃଷ୍ଠୋଦୟ, ସ୍ତ୍ରୀ, ଯୁଗ୍ମ, ଜଳ ଓ ଉତ୍ତର ଦିଗ । (୫) ସିଂହ—ସ୍ଥିର, ଶୀର୍ଷୋଦୟ, ପୁରୁଷ, ଓଜ, ଅଗ୍ନି ଓ ପୂର୍ବଦିଗ । (୬) କନ୍ୟା—ଦ୍ୱିସ୍ୱଭାବ, ଶୀର୍ଷୋଦୟ, ସ୍ତ୍ରୀ, ଯୁଗ୍ମ, ଭୂମି ଓ ଦକ୍ଷିଣ ଦିଗ । (୭) ତୁଳା—ଚର, ଶୀର୍ଷୋଦୟ, ପୁରୁଷ, ଓଜ, ବାୟୁ ଓ ପଶ୍ଚିମ ଦିଗ । (୮) ବିଛା—ସ୍ଥିର, ଶୀର୍ଷୋଦୟ, ସ୍ତ୍ରୀ, ଯୁଗ୍ମ, ଜଳ ଓ ଉତ୍ତର ଦିଗ । (୯) ଧନୁ—ଦ୍ୱିସ୍ୱଭାବ, ପୃଷ୍ଠୋଦୟ, ପୁରୁଷ, ଓଜ, ଅଗ୍ନି ଓ ପୂର୍ବଦିଗ । ୧୦) ମକର—ଚର, ପୃଷ୍ଠୋଦୟ, ସ୍ତ୍ରୀ, ଯୁଗ୍ମ, ଭୂମି ଓ ଦକ୍ଷିଣ ଦିଗ । (୧୧) କୁମ୍ଭ—ସ୍ଥିର ଶୀର୍ଷୋଦୟ, ପୁରୁଷ, ଓଜ, ବାୟୁ ଓ ପଶ୍ଚିମ ଦିଗ । (୧୨) ମୀନ—ଦ୍ୱିସ୍ୱଭାବ, ଉଭୟୋଦୟ, ସ୍ତ୍ରୀ, ଯୁଗ୍ମ, ଜଳ ଓ ଉତ୍ତର ଦିଗ ।

ଗ୍ରହ ଓ ଲିଙ୍ଗ—ରବି ପୁଂଲିଙ୍ଗ, ଚନ୍ଦ୍ର ସ୍ତ୍ରୀ ଲିଙ୍ଗ, ମଙ୍ଗଳ ପୁଂଲିଙ୍ଗ, ବୁଧ ନପୁଂସକ, ବୃହସ୍ପତି ପୁଂଲିଙ୍ଗ, ଶୁକ୍ର ସ୍ତ୍ରୀଲିଙ୍ଗ, ଶନି, ନପୁଂସକ, ରାହୁ ସ୍ତ୍ରୀ ଲିଙ୍ଗ ଓ କେତୁ ନପୁଂସକ ।

ଶୁଭ ଓ ପାପଗ୍ରହ:—ବୃହସ୍ପତି ଓ ଶୁକ୍ର ଶୁଭଗ୍ରହ । ଚନ୍ଦ୍ର, (ଶୁକ୍ଳପକ୍ଷ ଅଷ୍ଟମୀଠାରୁ କୃଷ୍ଣପକ୍ଷ ଅଷ୍ଟମୀ ପର୍ଯ୍ୟନ୍ତ) ଏବଂ ବୁଧ (ଯଦି ଶୁଭଗ୍ରହ ସଙ୍ଗରେ ଥାଏ) ଶୁଭଗ୍ରହ ଅଟନ୍ତି । କୃଷ୍ଣପକ୍ଷ ଅଷ୍ଟମୀଠାରୁ ଶୁକ୍ଳପକ୍ଷ ଅଷ୍ଟମୀ ପର୍ଯ୍ୟନ୍ତ ଚନ୍ଦ୍ର, ପାପଗ୍ରହଯୁକ୍ତ ବୁଧ, ଶନି, ମଙ୍ଗଳ, ରବି, ରାହୁ ଓ କେତୁ ପାପଗ୍ରହ ଅଟନ୍ତି ।

## * ଗୃହ ବା ଭାବ ଓ ତାହାର ସୂଚନା

୧ମ ଗୃହ ବା ଭାବ—ଶରୀର

୨ୟ ଗୃହ ବା ଭାବ—ଧନ, ମୃତ୍ୟୁ

୩ୟ ଗୃହ ବା ଭାବ—ଭାଇ ଓ ଭଉଣୀ

* ସ୍ଥୂଳ ଭାବରେ ଦେଖିଲେ ଗୃହ ଓ ଭାବ ସମାନ ଅଟେ ।

୪ର୍ଥ ଗୃହ ବା ଭବ—ବିଦ୍ୟା, ଯାନବାହାନ, ଭୂସମ୍ପତ୍ତି ଓ ମାତା ।

୫ମ ଗୃହ ବା ଭବ—ସନ୍ତାନ ଓ ଜ୍ଞାନ । ବୁଦ୍ଧି

୬ଷ୍ଠ ଗୃହ ବା ଭବ—ରୋଗ, ଶତ୍ରୁ ।

୭ମ ଗୃହ ବା ଭବ—ସ୍ୱାମୀ, ସ୍ତ୍ରୀ ଓ ମୃତ୍ୟୁ ।

୮ମ ଗୃହ ବା ଭବ—ଆୟୁ ।

୯ମ ଗୃହ ବା ଭବ—ଭାଗ୍ୟ, ପିତା ।

୧୦ମ ଗୃହ ବା ଭବ—କର୍ମ ।

୧୧ଶ ଗୃହ ବା ଭବ—ଲାଭ ।

୧୨ଶ ଗୃହ ବା ଭବ—ବ୍ୟୟ ।

**କାରକ**—ରବି ପିତୃକାରକ, ଚନ୍ଦ୍ର ମାତୃକାରକ, ମଙ୍ଗଳ ଭ୍ରାତୃ କାରକ, ବୁଧ ବ୍ୟବସାୟ ବା କର୍ମ କାରକ; ବୃହସ୍ପତି ସନ୍ତାନ କାରକ, ଶୁକ୍ର ସ୍ୱାମୀ ବା ସ୍ତ୍ରୀ କାରକ ଏବଂ ଶନି ଆୟୁକାରକ ଅଟନ୍ତି ।

କୋଷ୍ଠୀବିଚାର ବଡ଼ ଜଟିଳ ବ୍ୟାପାର । ଭବିଷ୍ୟତ ଗଣନା ଅଳ୍ପ କେତୋଟି ନିୟମ ଦ୍ୱାରା ଆବଦ୍ଧ ନୁହେଁ । ସେଥିପାଇଁ ବହୁ ପରିମାଣରେ ଗ୍ରନ୍ଥପାଠ, ସ୍ମରଣ ଶକ୍ତି ଓ ବିଚାର ଶକ୍ତି ଦରକାର । ଅନେକ ଲୋକ ଅଳ୍ପ ପାଠୁଆ ନାହାକମାନଙ୍କ ଦ୍ୱାରା କୋଷ୍ଠୀ ଗଣାଇ ସେମାନଙ୍କର କହିବା ମୁତାବକ ଫଳ ନ ପାଇବାରୁ ଜ୍ୟୋତିଷ ଶାସ୍ତ୍ର ଉପରେ ଅବିଶ୍ୱାସ କରନ୍ତି । କିନ୍ତୁ ଜ୍ୟୋତିଷ ଶାସ୍ତ୍ର କେତେ ବିସ୍ତୃତ ଓ କଷ୍ଟସାଧ୍ୟ ଏକଥା ଯଦି ସେମାନେ ବୁଝନ୍ତେ ତାହାହେଲେ ଅଳ୍ପଶିକ୍ଷିତ ବା ଅଶିକ୍ଷିତ ଲୋକଙ୍କର ଭବିଷ୍ୟତ ବାଣୀ ଉପରେ ନିର୍ଭର କରି ଏତେ ବଡ଼ ଶାସ୍ତ୍ର ଉପରେ ଦୋଷାରୋପ କରନ୍ତେ ନାହିଁ । ଭବିଷ୍ୟତ ଗଣନା ସମ୍ବନ୍ଧରେ ସ୍ଥୂଳଧାରଣା ଜନ୍ମାଇବାପାଇଁ କେତେଗୁଡ଼ିଏ ନିୟମ ନିମ୍ନରେ ଦିଆଗଲା । ଯଥା—

୧—ଶୁଭଗ୍ରହ କେନ୍ଦ୍ରର ଅଧିପତି ହେଲେ ଅଶୁଭ ଫଳ ଦିଏ । ଶୁଭଗ୍ରହମାନଙ୍କ ମଧ୍ୟରେ ବୃହସ୍ପତି କେନ୍ଦ୍ରର ଅଧିପତି ହେଲେ

ସର୍ବାପେକ୍ଷା ଅଧିକ ଅଶୁଭ ଫଳ ଦିଏ । ଶୁକ୍ର କେନ୍ଦ୍ରାଧିପତି ହେଲେ ଅଶୁଭ ଫଳ ବୃହସ୍ପତି ଅପେକ୍ଷା କମ୍ ମାତ୍ରାରେ ଦିଏ । ପାପଗ୍ରହ କେନ୍ଦ୍ରାଧିପତି ହେଲେ ଶୁଭଫଳ ଦିଏ ।

୨- ୩ୟ, ୬ଷ୍ଠ, ଓ ୧୧ଶ ଗୃହର ଅଧିପତିମାନେ ଅଶୁଭ ଫଳ ଦିଅନ୍ତି ।

ଶୁଭଗ୍ରହ କେନ୍ଦ୍ରରେ ଅବସ୍ଥାନ କଲେ ଶୁଭଫଳ ଦିଏ ଏବଂ ପାପଗ୍ରହ କେନ୍ଦ୍ରରେ ଅବସ୍ଥାନ କଲେ ଅଶୁଭଫଳ ଦିଏ ।

ଶୁଭଗ୍ରହ ୩ୟ, ୬ଷ୍ଠ, ୮ମ ଓ ୧୨ଶ ସ୍ଥାନରେ ଅବସ୍ଥାନ କଲେ ଅଶୁଭଫଳ ଦିଏ ଏବଂ ପାପଗ୍ରହ ଉପରୋକ୍ତ ସ୍ଥାନମାନଙ୍କରେ ଅବସ୍ଥାନ କଲେ ଶୁଭ ଫଳ ଦିଏ ।

୪- ଅଷ୍ଟମାଧିପତି ଅଶୁଭଫଳ ଦିଏ । ମାତ୍ର ଯଦି ସେ ଅଷ୍ଟମାଧିପତି ହୋଇ ଲଗ୍ନାଧିପତି ମଧ୍ୟ ହୋଇଥାଏ କିମ୍ବା କୌଣସି ଶୁଭଗ୍ରହ ସଙ୍ଗରେ ଥାଏ ତାହାହେଲେ ଶୁଭଫଳ ଦିଏ ।

୨- ରାହୁ ଓ କେତୁ ଯେଉଁ ଗ୍ରହର ଗୃହରେ ରହନ୍ତି କିମ୍ବା ଯେଉଁ ଗ୍ରହର ସଙ୍ଗରେ ରହନ୍ତି ସେହି ଗ୍ରହର ଫଳ ଦିଅନ୍ତି ।

୬- କେନ୍ଦ୍ର ଓ ତ୍ରିକୋଣାଧିପତି ଏକତ୍ର ଅବସ୍ଥାନ କଲେ ରାଜଯୋଗ କାରକ ହୁଅନ୍ତି । ୯ମ ଓ ୧୦ମାଧିପତି ଏକତ୍ର ଅବସ୍ଥାନ କଲେ ସର୍ବାପେକ୍ଷା ଶକ୍ତିଶାଳି ରାଜଯୋଗ ହୁଏ । ୯ମ ଓ ୧୦ମାଧିପତି ପରସ୍ପରର ସ୍ଥାନ ପରିବର୍ତ୍ତନ କଲେ ମଧ୍ୟ ରାଜଯୋଗ ହୁଏ । ଯଦି କୌଣସି ଗ୍ରହ ଏକାଧାରରେ କେନ୍ଦ୍ର ଓ ତ୍ରିକୋଣାଧିପତି ହୁଏ ସେହି ଗ୍ରହଟି ରାଜଯୋଗ କାରକ ହୁଏ ।

ଏହି ରାଜଯୋଗ କାରକ ଗ୍ରହମାନେ ଅନ୍ୟାନ୍ୟ ପାପଗ୍ରହ ସଙ୍ଗରେ ଥିଲେ କିମ୍ବା ସେମାନଙ୍କର ଅନ୍ୟ ପାପସ୍ଥାନର ଆଧିପତ୍ୟ ଥିଲେ ଯୋଗର କ୍ଷମତା ହ୍ରାସ ହୁଏ ।

୬ଷ୍ଠ ଓ ୭ମାଧିପତି ମାରକ ହୁଅନ୍ତି । ୨ୟ ଓ ୭ମ ସ୍ଥାନରେ ଅବସ୍ଥାନ କରୁଥିବା ଗ୍ରହମାନେ ୨ୟ ଓ ୭ମାଧିପତିଙ୍କ ଅପେକ୍ଷା ଅଧିକ ମାରକ ହୁଅନ୍ତି । ୨ୟ ଓ ୭ମାଧିପତିଙ୍କ ସଙ୍ଗରେ ଅବସ୍ଥାନ କରୁଥିବା ଗ୍ରହମାନେ ସର୍ବାପେକ୍ଷା ଅଧିକ ମାରକ ହୁଅନ୍ତି ।

ମଙ୍ଗଳ ୧୦ମାଧିପତି ହେଲେ ଅଶୁଭ ଫଳ ଦିଏ । ମାତ୍ର ଯଦି ମଙ୍ଗଳ ୧୦ମାଧିପତି ହୋଇ ୫ମାଧିପତି ମଧ୍ୟ ହୋଇଥାଏ ତାହା-ହେଲେ ଶୁଭ ଫଳ ଦିଏ ।

ଗୋଟିଏ ଗ୍ରହ ତାହାର ଆଧିପତ୍ୟ ଦୃଷ୍ଟି ଓ ଅବସ୍ଥିତି ଦ୍ୱାରା ଯେଉଁ ଯେଉଁ ଭାବ ବା ଗୃହ ସଙ୍ଗରେ ସଂଯୁକ୍ତ ତାହାର ଦଶା କାଳରେ ସେହି ସେହି ଗୃହ ବା ଭାବର ଫଳ ଦିଏ ।

---

# ନବମ ପରିଚ୍ଛେଦ

## ଋଷ୍ଟ ପ୍ରକରଣ

ଶିଶୁଟିଏ ଜନ୍ମ ହେବାର ପରେ ତାହାର କୌଣସି ପ୍ରକାର ଋଷ୍ଟ ହୋଇଛି କି ନାହିଁ ତାହା ପ୍ରଥମେ ଦେଖିବା ଆବଶ୍ୟକ । ଋଷ୍ଟ ବହୁବିଧ । ତନ୍ମଧ୍ୟରୁ କେତେକ ନିମ୍ନରେ ଦିଆଗଲା ।

ଗଣ୍ଡଋଷ୍ଟ-(୧) ରେବତୀ ନକ୍ଷତ୍ରର ଶେଷ ୫ ଦଣ୍ଡ ଏବଂ ଅଶ୍ୱିନୀ ନକ୍ଷତ୍ରର ପ୍ରଥମ ୩ଦଣ୍ଡ ସନ୍ଧ୍ୟା ସମୟରେ ପଡ଼ିଲେ ତାହାକୁ ସନ୍ଧ୍ୟା ଗଣ୍ଡ ବୋଲିଯାଏ । ସନ୍ଧ୍ୟା ଗଣ୍ଡରେ ଜନ୍ମ ହେଲେ ଶିଶୁର ମୃତ୍ୟୁ ହୁଏ ।

(୨) ଅଶ୍ଳେଷା ନକ୍ଷତ୍ରର ଶେଷ ୫ଦଣ୍ଡ ଏବଂ ମଘା ନକ୍ଷତ୍ରର ପ୍ରଥମ ୩ଦଣ୍ଡ ରାତିରେ ପଡ଼ିଲେ ତାହାକୁ ରାତିଗଣ୍ଡ ବୋଲିଯାଏ । ରାତି ଗଣ୍ଡରେ ଜାତ ଶିଶୁର ମାତାର ମୃତ୍ୟୁ ହୁଏ ।

(୩) ଜ୍ୟେଷ୍ଠା ନକ୍ଷତ୍ରର ଶେଷ ୫ଦଣ୍ଡ ଏବଂ ମୂଳା ନକ୍ଷତ୍ରର ପ୍ରଥମ ୩ଦଣ୍ଡ ଦିବସରେ ପଡ଼ିଲେ ତାହାକୁ ଦିବାଗଣ୍ଡ ବୋଲିଯାଏ । ଦିବାଗଣ୍ଡରେ ଜାତ ଶିଶୁର ପିତାର ମୃତ୍ୟୁ ହୁଏ ।

ଉପରୋକ୍ତ ପ୍ରକାରେ ଗଣ୍ଡରିଷ୍ଟ ହୋଇଥିଲେ ରେବତୀ ନକ୍ଷତ୍ରରେ ଜାତ ଶିଶୁର ୨½ ବର୍ଷ, ଅଶ୍ୱିନୀ ନକ୍ଷତ୍ରରେ ଜାତ ଶିଶୁର ୧୦ମାସ, ଜ୍ୟେଷ୍ଠା ନକ୍ଷତ୍ରରେ ଜାତଶିଶୁର ୧½ ବର୍ଷ, ମୂଳା ନକ୍ଷତ୍ରରେ ଜାତ ଶିଶୁର ୭ବର୍ଷ, ମଘା ନକ୍ଷତ୍ରରେ ଜାତ ଶିଶୁର ୪ବର୍ଷ ଏବଂ ଅଶ୍ଳେଷା ନକ୍ଷତ୍ରରେ ଜାତ ଶିଶୁର ୧ବର୍ଷ ପର୍ଯ୍ୟନ୍ତ ରିଷ୍ଟକାଳ ଧରାଯାଏ । ଦିବାଗଣ୍ଡ ଜାତ କନ୍ୟାର ଏବଂ ରାତ୍ରିଗଣ୍ଡ ଜାତ ପୁତ୍ରର ଗଣ୍ଡଦୋଷ ହୁଏ ନାହିଁ ।

**ପତାକୀ ରିଷ୍ଟ**— ପତାକୀ ରିଷ୍ଟ ନିର୍ଣ୍ଣୟ କରିବାକୁ ହେଲେ ଜନ୍ମ ସମୟର ଯାମାର୍ଦ୍ଧାଧିପ, ଦଣ୍ଡାଧିପ ଓ ଜନ୍ମ ଲଗ୍ନର ବେଧ ସ୍ଥାନ ନିର୍ଣ୍ଣୟ କରିବାକୁ ହୁଏ ।

ଦିନମାନ ଓ ରାତ୍ରିମାନକୁ ୮ ଭାଗ କଲେ ପ୍ରତ୍ୟେକ ଭାଗକୁ ଯାମାର୍ଦ୍ଧ ବୋଲି ଯାଏ । ବାରଭେଦରେ ଭିନ୍ନ ଯାମାର୍ଦ୍ଧର ଅଧିପତିମାନେ ପରିବର୍ତ୍ତିତ ହୁଅନ୍ତି । ନିମ୍ନଲିଖିତ ଚକ୍ରରୁ ପାଠକେ ସମସ୍ତ ବାରପାଇଁ ଦିନମାନ ଓ ରାତ୍ରିମାନର ଯାମାର୍ଦ୍ଧାଧିପତି ସହଜରେ ନିରୂପଣ କରି ପାରିବେ ।

## ଦିବା ଯାମାର୍ଦ୍ଧାଧିପତି ଚକ୍ର

| ବାର | ରବି | ସୋମ | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |
|---|---|---|---|---|---|---|---|
| ୧ମ ଯାମାର୍ଦ୍ଧ | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |
| ୨ୟ ,, | ଶୁକ୍ର | ଶନି | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ |
| ୩ୟ ,, | ବୁଧ | ଗୁରୁ | ଶୁକ୍ର | ଶନି | ରବି | ଚନ୍ଦ୍ର | ମଙ୍ଗଳ |
| ୪ର୍ଥ ,, | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି | ରବି |
| ୫ମ ,, | ଶନି | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର |
| ୬ଷ୍ଠ ,, | ଗୁରୁ | ଶୁକ୍ର | ଶନି | ରବି | ଚନ୍ଦ୍ର | ମଙ୍ଗଳ | ବୁଧ |
| ୭ମ ,, | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି | ରବି | ଚନ୍ଦ୍ର |
| ୮ମ ,, | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |

## ଗ୍ରହ ଯାମାର୍ଦ୍ଧାଧିପ ଚକ୍ର

| ବାର | ରବି | ସୋମ | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |
|---|---|---|---|---|---|---|---|
| ୧ମ ଯାମାର୍ଦ୍ଧ | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |
| ୨ୟ ,, | ଗୁରୁ | ଶୁକ୍ର | ଶନି | ରବି | ଚନ୍ଦ୍ର | ମଙ୍ଗଳ | ବୁଧ |
| ୩ୟ ,, | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି | ରବି |
| ୪ର୍ଥ ,, | ଶୁକ୍ର | ଶନି | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ |
| ୫ମ ,, | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି | ରବି | ଚନ୍ଦ୍ର |
| ୬ଷ୍ଠ ,, | ଶନି | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର |
| ୭ମ ,, | ବୁଧ | ଗୁରୁ | ଶୁକ୍ର | ଶନି | ରବି | ଚନ୍ଦ୍ର | ମଙ୍ଗଳ |
| ୮ମ ,, | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |

ପ୍ରତ୍ୟେକ ଯାମାର୍ଦ୍ଧକୁ ୪ ଭାଗ କଲେ ୧ ଭାଗକୁ ଦଣ୍ଡ ବୋଲିଯାଏ । ଦଣ୍ଡାଧିପ ନିରୂପଣ କରିବାକୁ ହେଲେ ପ୍ରଥମେ କେଉଁ ଯାମାର୍ଦ୍ଧର କେଉଁ ଦଣ୍ଡରେ ଜାତକ ଜନ୍ମଗ୍ରହଣ କରିଅଛି ତାହା ନିରୂପଣ କରିବାକୁ ହେବ । ଉକ୍ତ ଦଣ୍ଡର ଅଧିପତି ନିମ୍ନଲିଖିତ ଚକ୍ରରୁ ସହଜରେ ଜଣା ଯିବ ।

## ଦିବା ଯାମାର୍ଦ୍ଧର ଦଣ୍ଡାଧିପ ଚକ୍ର

| ଯାମାର୍ଦ୍ଧାଧିପ | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |
|---|---|---|---|---|---|---|---|
| ୧ମ ଦଣ୍ଡ | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |
| ୨ୟ ଦଣ୍ଡ | ରାହୁ | ରବି | ରବି | ଚନ୍ଦ୍ର | ଚନ୍ଦ୍ର | ମଙ୍ଗଳ | ମଙ୍ଗଳ |
| ୩ୟ ଦଣ୍ଡ | ବୁଧ | ରାହୁ | ରାହୁ | ରବି | ରବି | ରବି | ରବି |
| ୪ର୍ଥ ଦଣ୍ଡ | ଚନ୍ଦ୍ର | ବୁଧ | ବୁଧ | ରାହୁ | ରାହୁ | ରାହୁ | ରାହୁ |

## ଗ୍ରହ ଯାମାର୍ଦ୍ଧର ଦଣ୍ଡାଧିପ ଚକ୍ର

| ଯାମାର୍ଦ୍ଧାଧିପ | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |
|---|---|---|---|---|---|---|---|
| ୧ମ ଦଣ୍ଡ | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି |
| ୨ୟ ଦଣ୍ଡ | ଶୁକ୍ର | ଶନି | ରବି | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ |
| ୩ୟ ଦଣ୍ଡ | ବୁଧ | ଗୁରୁ | ଶୁକ୍ର | ଶନି | ରବି | ଚନ୍ଦ୍ର | ମଙ୍ଗଳ |
| ୪ର୍ଥ ଦଣ୍ଡ | ଚନ୍ଦ୍ର | ମଙ୍ଗଳ | ବୁଧ | ଗୁରୁ | ଶୁକ୍ର | ଶନି | ରବି |

ଶିଶୁ କୌଣସି ପାପ ଗ୍ରହର ଦଣ୍ଡରେ ଜନ୍ମହେଲେ ଏବଂ ଉକ୍ତ ପାପଗ୍ରହ ଶିଶୁର ଜନ୍ମଲଗ୍ନ କିମ୍ବା ଅନ୍ୟ କେତେକ ନିର୍ଦ୍ଦିଷ୍ଟ ରାଶିରେ ଅବସ୍ଥାନ କଲେ ପତାକୀ ବେଧ ହୁଏ । ଉକ୍ତପ୍ରକାର ପତାକୀ ବେଧ ହେଲେ :—

| | | | | | | | | | |
|---|---|---|---|---|---|---|---|---|---|
| ମେଷ | ଲଗ୍ନ | ଜାତ | ଶିଶୁର | ୧୬ | ଦିନ, | ୧୬ | ମାସ | କିମ୍ବା | ୧୬ ବର୍ଷରେ |
| ବୃଷ | ,, | ,, | | ୧୬ | ,, | ୧୬ | ,, | ,, | ୧୬ ,, |
| ମିଥୁନ | ,, | ,, | ,, | ୩୯ | ,, | ୩୯ | ,, | ,, | ୩୯ ,, |
| କର୍କଟ | ,, | ,, | ,, | ୧୯ | ,, | ୧୯ | ,, | ,, | ୧୯ ,, |
| ସିଂହ | ,, | ,, | ,, | ୧୬ | ,, | ୧୬ | ,, | ,, | ୧୬ ,, |
| କନ୍ୟା | ,, | ,, | ,, | ୩୬ | ,, | ୩୬ | ,, | ,, | ୩୬ ,, |
| ତୁଳା | ,, | ,, | ,, | ୨୬ | ,, | ୨୬ | ,, | ,, | ୨୬ |
| ବିଛା | ,, | ,, | ,, | ୧୬ | ,, | ୧୬ | ,, | ,, | ୧୬ ,, |
| ଧନୁ | ,, | ,, | ,, | ୨୯ | ,, | ୨୯ | ,, | ,, | ୨୯ ,, |
| ମକର | ,, | ,, | ,, | ୨୬ | ,, | ୨୬ | ,, | ,, | ୨୬ ,, |
| କୁମ୍ଭ | ,, | ,, | ,, | ୧୬ | ,, | ୧୬ | ,, | ,, | ୧୬ ,, |
| ମୀନ | ,, | ,, | ,, | ୨୯ | ,, | ୨୯ | ,, | ,, | ୨୯ ବର୍ଷରେ |

ମୃତ୍ୟୁ ହୋଇଥାଏ ।

ଉପରେ ନିର୍ଦ୍ଦିଷ୍ଟ ହୋଇଥିବା ଦିନ, ମାସ କିମ୍ବା ବର୍ଷ ମଧ୍ୟରୁ କେଉଁଥିରେ ଶିଶୁର ମୃତ୍ୟୁ ହେବ ତାହା ଦଶାଧିପ ଗ୍ରହର ବଳାବଳ ଦ୍ୱାରା ବିଚାର କରିବାକୁ ହୁଏ । ଦଶାଧିପ ଗ୍ରହ ପୂର୍ଣ୍ଣବଳୀ ହେଲେ ଦିନ ପରିମିତ କାଳରେ, ମଧ୍ୟବଳୀ ହେଲେ ମାସ ପରିମିତ କାଳରେ ଏବଂ ହୀନବଳୀ ହେଲେ ବର୍ଷ ପରିମିତ କାଳରେ ଶିଶୁର ମୃତ୍ୟୁ ହୁଏ ।

ପ୍ରତ୍ୟେକ ଲଗ୍ନଜାତ ବ୍ୟକ୍ତିର ଲଗ୍ନ ଛଡ଼ା ଅନ୍ୟ କେଉଁ ରାଶିରେ ଦଶାଧିପ ପାପଗ୍ରହ ରହିଲେ ପତାକୀ ବେଧ ହୁଏ ତାହା ନିମ୍ନୋକ୍ତ ତାଲିକାରୁ ସହଜରେ ଜଣାଯିବ ।

ମେଷ ଲଗ୍ନ—କନ୍ୟା, ଧନୁ, ମୀନ
ବୃଷ ,, —ସିଂହ, ବିଛା, କୁମ୍ଭ
ମିଥୁନ ,, —କର୍କଟ, ତୁଳା, ମକର
କର୍କଟ ,, —ଧନୁ, ମୀନ
ସିଂହ ,, — ବିଛା, କୁମ୍ଭ
କନ୍ୟା ,, —ତୁଳା, ମକର
ତୁଳା ,, —ମୀନ, କନ୍ୟା
ବିଛା ,, —କୁମ୍ଭ, ସିଂହ
ଧନୁ ,, — ମକର, କର୍କଟ
ମକର ,, — କନ୍ୟା, ଧନୁ
କୁମ୍ଭ ,, —ସିଂହ, ବିଛା
ମୀନ ,, —କର୍କଟ, ତୁଳା

ବାଳାରିଷ୍ଟ—ଜାତକରେ ଗ୍ରହମାନଙ୍କର କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ଅବସ୍ଥିତି ଇତ୍ୟାଦି ହେତୁ ଶିଶୁର ୮ବର୍ଷ ମଧ୍ୟରେ ମୃତ୍ୟୁ ହୁଏ । ଏହାକୁ ବାଳାରିଷ୍ଟ ବୋଲାଯାଏ । ଗ୍ରହମାନଙ୍କର ପରିସ୍ଥିତିରୁ ବାଳାରିଷ୍ଟ ସାବଧାନତା ସହକାରେ ନିରୂପଣ କରିବାକୁ ହୁଏ । ଜାତକରେ ଗ୍ରହମାନଙ୍କର ଯେଉଁ ପରିସ୍ଥିତିମାନଙ୍କରେ ଜାତକର ବାଳାରିଷ୍ଟ ହୁଏ ତନ୍ମଧ୍ୟରୁ କେତେକ ନିମ୍ନରେ ଦିଆଗଲା ।

(୧) ପାପଗ୍ରହମାନେ ୮ମ ଓ କେନ୍ଦ୍ର ସ୍ଥାନମାନଙ୍କରେ ଅବସ୍ଥାନ କଲେ ଜାତକର ଶୀଘ୍ର ମୃତ୍ୟୁ ହୁଏ ।

(୨) ଲଗ୍ନରେ ଚନ୍ଦ୍ର, ୮ମରେ ମଙ୍ଗଳ, ୯ମରେ ରବି ଏବଂ ୧୨ଶ ସ୍ଥାନରେ ଶନି ଅବସ୍ଥାନ କଲେ ଶିଶୁର ମୃତ୍ୟୁ ହୁଏ ।

(୩) ପାପଗ୍ରହମାନେ ଲଗ୍ନ ଓ ୭ମ ସ୍ଥାନରେ ଅବସ୍ଥାନ କଲେ ଜାତକର ଶୀଘ୍ର ମୃତ୍ୟୁ ହୁଏ ।

(୪) ଚନ୍ଦ୍ର କିମ୍ବା ଲଗ୍ନ ଦୁଇ ପାପଗ୍ରହର ମଧ୍ୟବର୍ତ୍ତୀ ହେଲେ ଜାତକର ଶୀଘ୍ର ମୃତ୍ୟୁ ହୁଏ ।

(୫) ଚନ୍ଦ୍ର ପାପଯୁକ୍ତ ହୋଇ କେନ୍ଦ୍ରରେ ଅବସ୍ଥାନ କଲେ ଶିଶୁର ମୃତ୍ୟୁ ହୁଏ ।

(୬) ଚନ୍ଦ୍ର ୮ମ ସ୍ଥାନରେ, ମଙ୍ଗଳ ୭ମ ସ୍ଥାନରେ, ଏବଂ ସୂର୍ଯ୍ୟ ୯ମ ସ୍ଥାନରେ ଅବସ୍ଥାନ କଲେ ଜାତକର ଶୀଘ୍ର ମୃତ୍ୟୁ ହୁଏ ।

(୭) ବଳହୀନ ଚନ୍ଦ୍ର ୬ଷ୍ଠ, ୮ମ କିମ୍ବା ୧୨ଶ ସ୍ଥାନରେ ଅବସ୍ଥାନ କଲେ ଜାତକର ଶୀଘ୍ର ମୃତ୍ୟୁ ହୁଏ ।

(୮) କ୍ଷୀଣଚନ୍ଦ୍ର ପାପଯୁକ୍ତ ହୋଇ ୧ମ, ୫ମ ୭ମ କିମ୍ବା ୧୨ଶ ସ୍ଥାନରେ ଅବସ୍ଥାନ କଲେ ଜାତକର ଶୀଘ୍ର ମୃତ୍ୟୁ ହୁଏ ।

(୯) କୌଣସି ଶୁଭଗ୍ରହ କେନ୍ଦ୍ରରେ ଅବସ୍ଥାନ କରୁ ନ ଥିଲେ କିମ୍ବା କୌଣସି କେନ୍ଦ୍ରକୁ ଦୃଷ୍ଟି ଦେଉ ନ ଥିଲେ ଜାତକର ଶୀଘ୍ର ମୃତ୍ୟୁ ହୁଏ ।

ବୃହସ୍ପତି, ଶୁକ୍ର କିମ୍ବା ବୁଧ ବଳବାନ୍ ହୋଇ ଶୁଭ ସ୍ଥାନରେ ଅବସ୍ଥାନ କଲେ କିମ୍ବା ବଳବାନ୍ ଲଗ୍ନାଧିପତି ଶୁଭଗ୍ରହ ଦ୍ୱାରା ଦୃଷ୍ଟ-ହୋଇ ଶୁଭସ୍ଥାନରେ ଅବସ୍ଥାନ କଲେ କିମ୍ବା ଲଗ୍ନରେ ବଳବାନ୍ ବୃହସ୍ପତି ଅବସ୍ଥାନ କଲେ କିମ୍ବା ପୂର୍ଣ୍ଣଚନ୍ଦ୍ର ଦୁଇ ଶୁଭଗ୍ରହ ମଧ୍ୟରେ ଅବସ୍ଥାନ କଲେ ବାଳାରିଷ୍ଟ ଖଣ୍ଡିତ ହୁଏ ।

# ଓଡ଼ିଶାର ବିଭିନ୍ନ ଅକ୍ଷାଂଶରେ ଥିବ ପ୍ରଧାନ ସ୍ଥାନମାନଙ୍କୁ ସାୟନ ଲଗ୍ନମାନ

| ସ୍ଥାନ ଓ | ଜଳେଶ୍ୱର | | ବାଲେଶ୍ୱର | | ଭଦ୍ରକ | | ଯାଜପୁର | | କଟକ | | ଭୁବନେଶ୍ୱର | | ପୁରୀ | | ବ୍ରହ୍ମପୁର | | କୋରାପୁଟ | |
|---|---|---|---|---|---|---|---|---|---|---|---|---|---|---|---|---|---|---|
| ଅକ୍ଷାଂଶ | ୨୧°୪୮' | | ୨୧°୩୦' | | ୨୧°୫' | | ୨୦°୫୧' | | ୨୦°୨୮' | | ୨୦°୧୫' | | ୧୯°୪୮' | | ୧୯°୨୦' | | ୧୮°୪୬' | |
| ଲଗ୍ନ | ଦ | ଲି | ଦ | ଲି | ଦ | ଲି | ଦ | ଲି | ଦ | ଲି | ଦ | ଲି | ଦ | ଲି | ଦ | ଲି | ଦ | ଲି |
| ମେଷ | ୩ | ୫୧ | ୩ | ୫୨ | ୩ | ୫୩ | ୩ | ୫୩ | ୩ | ୫୪ | ୩ | ୫୫ | ୩ | ୫୬ | ୩ | ୫୬ | ୩ | ୫୮ |
| ବୃଷ | ୪ | ୨୧ | ୪ | ୨୧ | ୪ | ୨୨ | ୪ | ୨୩ | ୪ | ୨୩ | ୪ | ୨୪ | ୪ | ୨୫ | ୪ | ୨୫ | ୪ | ୨୬ |
| ମିଥୁନ | ୫ | ୬ | ୫ | ୬ | ୫ | ୬ | ୫ | ୬ | ୫ | ୬ | ୫ | ୭ | ୫ | ୮ | ୫ | ୮ | ୫ | ୮ |
| କର୍କଟ | ୫ | ୩୮ | ୫ | ୩୮ | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୫ |
| ସିଂହ | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୫ | ୫ | ୩୫ | ୫ | ୩୩ | ୫ | ୩୩ | ୫ | ୩୩ |
| କନ୍ୟା | ୫ | ୨୬ | ୫ | ୨୬ | ୫ | ୨୫ | ୫ | ୨୪ | ୫ | ୨୪ | ୫ | ୨୩ | ୫ | ୨୨ | ୫ | ୨୧ | ୫ | ୨୦ |
| ତୁଳା | ୫ | ୨୬ | ୫ | ୨୬ | ୫ | ୨୫ | ୫ | ୨୪ | ୫ | ୨୪ | ୫ | ୨୩ | ୫ | ୨୨ | [illegible] | ୨୧ | ୫ | ୨୦ |
| ବିଛା | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୫ | ୫ | ୩୫ | ୫ | ୩୩ | ୫ | ୩୩ | ୫ | ୩୩ |
| ଧନୁ | ୫ | ୩୮ | ୫ | ୩୮ | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୬ | ୫ | ୩୬ | ୫ | [illegible] | ୫ | ୩୫ |
| ମକର | ୫ | ୬ | ୫ | ୬ | ୫ | ୬ | ୫ | ୬ | ୫ | ୬ | ୫ | ୬ | ୫ | ୮ | ୫ | ୮ | ୫ | ୮ |
| କୁମ୍ଭ | ୪ | ୨୧ | ୪ | ୨୧ | ୪ | ୨୨ | ୪ | ୨୩ | ୪ | ୨୩ | ୪ | ୨୪ | ୪ | ୨୫ | ୪ | ୨୫ | ୪ | ୨୬ |
| ମୀନ | ୩ | ୫୧ | ୩ | ୫୨ | ୩ | ୫୩ | ୩ | ୫୩ | ୩ | ୫୪ | ୩ | ୫୫ | ୩ | ୫୬ | ୩ | ୫୬ | ୩ | ୫୮ |
| [illegible] | ୬୦ | — | ୬୦ | — | ୬୦ | — | ୬୦ | — | ୬୦ | — | ୬୦ | — | ୬୦ | — | ୬୦ | — | ୬୦ | — |

M. P. A. C. ... ...ictive Astrology ବହିରେ ଦିଆଯାଇଥିବା।

ଓଡ଼ିଶାର ଅନ୍ୟ ଯେ କୌଣସି ସ୍ଥାନ ପାଇଁ ଲଗ୍ନମାନ ନିରୂପଣ କରିବାକୁ ହେଲେ ସେହି ସ୍ଥାନଟି ଉପରୋକ୍ତ ୯ ଗୋଟି ସ୍ଥାନମାନଙ୍କ ମଧ୍ୟରୁ ଯେଉଁ ସ୍ଥାନର ଅକ୍ଷାଂଶର ନିକଟବର୍ତ୍ତୀ ସେହି ସ୍ଥାନର ଲଗ୍ନମାନ ଧରିବାକୁ ହେବ ।

ଉଦାହରଣ:—(୧) ସମ୍ବଲପୁରର ଲଗ୍ନମାନ ନିରୂପଣ କର ।

ସମ୍ବଲପୁରର ଅକ୍ଷାଂଶ ୨୧°୩୦′ (ପ୍ରାୟ)

ବାଲେଶ୍ୱର ୨୧°୩୦′ ଅକ୍ଷାଂଶରେ ଅବସ୍ଥିତ । ତେଣୁ ସମ୍ବଲପୁର ପାଇଁ ବାଲେଶ୍ୱରର ଲଗ୍ନମାନ ଧରିବାକୁ ହେବ ।

୨ । ବାରିପଦାର ଲଗ୍ନମାନ ନିରୂପଣ କର ।

ବାରିପଦାର ଅକ୍ଷାଂଶ ୨୧°୫୦′ (ପ୍ରାୟ)

ବାଲେଶ୍ୱର ଅକ୍ଷାଂଶ ୨୧°୪୮′ ହୋଇଥିବାରୁ ତାହା ବାରିପଦା ଅକ୍ଷାଂଶର ନିକଟତମ ଅଟେ । ତେଣୁ ବାରିପଦା ପାଇଁ ବାଲେଶ୍ୱରର ଲଗ୍ନମାନ ଧରିବାକୁ ହେବ ।

ଅବଶ୍ୟ ଓଡ଼ିଶାର ଅନ୍ୟାନ୍ୟ କେତେକ ପ୍ରଧାନ ସ୍ଥାନମାନଙ୍କର ଅକ୍ଷାଂଶ ନିମ୍ନରେ ଦିଆଗଲା ।

| ସ୍ଥାନ | ଅକ୍ଷାଂଶ (ପ୍ରାୟ) |
|---|---|
| ବ୍ରଜରାଜନଗର | ୨୨°୪୦′ ” |
| କନ୍ଧମାଳ | ୨୧°୫୦′ ” |
| ମୟୂରଭଞ୍ଜ | ୨୧°୪୦′ ” |
| ଲଗିର | ୨୧°୩୦′ ,, |
| ଅବସ୍ଥିତ ଗଡ଼ | ୨୧°୩୦′ ,, |
| ହୋଇ ଲହଡ଼ା | ୨୧°୨୫′ ,, |
| ହୁହୁଗଡ଼ | ୨୧°୨୪′ ,, |
| ଅବସ୍ଥା ନଗର | ୨୧°୦′ ,, |
| | ୨୦°୫୦′ ,, |

| ସ୍ଥାନ | ଅକ୍ଷାଂଶ | ଉ ତ୍ତ |
|---|---|---|
| ସୋନପୁର | ୨୦°୫୦′ | ,, |
| ବୌଦ୍ଧ | ୨୦°୪୮′ | ,, |
| ବଲାଙ୍ଗିର | ୨୦°୪୦′ | ,, |
| ଢେଙ୍କାନାଳ | ୨୦°୪୦′ | ,, |
| ଆଠଗଡ଼ | ୨୦°୩୦′ | ,, |
| ଫୁଲ୍‌ବାଣୀ | ୨୦°୩୦′ | ,, |
| ଉଦୟଗିରି | ୨୦°୧୦′ | ,, |
| ବାଲିଗୁଡ଼ା | ୨୦°୧୦′ | ,, |
| ସୋରଡ଼ା | ୧୯°୪୮′ | ,, |
| କିଷମକଟକ | ୧୯°୩୦′ | ,, |
| ନବରଙ୍ଗପୁର | ୧୯°୩୦′ | ,, |
| ପାରଳାଖେମିଣ୍ଡି | ୧୮°୪୬′ | ,, |

Printed by B. K. Kar, B. A. at the Saraswata Press, Cuttack. 1947

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| / | ୧୩ | ଅଧୁନାକ ଛିନ | ଅଧୁନକ ଶିକ୍ଷିତ |
| ସୂଚୀପତ୍ର | ୧୫ | ଓଷାର | ଓଷ୍ଠଷାର |
| ୧୮ | ୧୪ | ଘ ୪।୩ ମିନଟ୍ | ଘ୧୪।୩୯ମିନଟ |
| ୧୯ | ୧୨ | ମେଷ ଦ୪।୫୪ ଲିପ୍ତା | ମେଷ ଦ୩।୫୪ ଲିପ୍ତା |
| ୨୭ | ୧ | ୧ମ ଲଗ୍ନ | ୧୦ମ ଲଗ୍ନ |
| ୩୦ | ୨୩ | ସୃଷ୍ଟିରେ ଥାଏ— | ସୃଷ୍ଟିରେ ଥାଏ, କର୍କଟ |
| ୫୨ | ୨ | ଷେମ | ମେଷ |
| ୪୭ | ୪ | ଘଣ୍ଟାଦ୍ଧ | ଘଣ୍ଟାକଣ୍ଟା |
| ୫୯ | ୨ | ଯାଣ୍ଡ | ଖଣ୍ଡ |